# ଖୁଦେ-ଖେଳା


ଲେଖକ :—

ଶ୍ରୀ ବାସୁଦେବ ମହାପାତ୍ର



ପ୍ରଥମ ସଂସ୍କରଣ

୧୯





ଏକ ଟଙ୍କା ଚାରି ଅଣା ମାତ୍ର

# ଆତ୍ମ-ବିବୃତି

**ପ୍ରିୟ ପାଠକବୃନ୍ଦ,**

ତ୍ରିଂଶ ବର୍ଷର ଧର୍ମ ଶିକ୍ଷକତା ପରେ ବୃଦ୍ଧତ୍ୱର ନିଗୂଢ଼ ଅନୁଭୂତି ନେଇ 'ଭବେଭୋଳା' ଲେଖିବାକୁ ଯାଇଅଛି । ଏଥିରେ 'ଭାର-ଭାରତ'ର ଉଦ୍ଦାମ ଭାରଣ୍ଡ କି 'ଶାନ୍ତିଧାରା'ର ଦାର୍ଶନିକ ଜଟିଳ ଯୁକ୍ତିଜାଳ ପାଇବେ ନାହିଁ । ପଥହରାର ବ୍ୟାକୁଳକ୍ରନ୍ଦନ, ଭକ୍ତିବିଶ୍ୱାସର ଉନ୍ମାଦନାମୟ ବିଭ୍ରନିର୍ଭରତା, ସନ୍ନ୍ୟାସର ଅମୃତମୟ ନୈଷ୍କର୍ମ୍ୟ, ତନ୍ମୟତାର ପବିତ୍ର ଶାନ୍ତିସୁଧା ଫୁଟାଇବା ପାଇଁ ଏଥିରେ ସିଦ୍ଧସାଧକ ଭକ୍ତମାନଙ୍କର ବୈଚିତ୍ର୍ୟମୟ ଜୀବନର ଆଶ୍ରୟ ନିଆଯାଇଅଛି । ଏ ପିପାସା ଭଗବତ୍ ପ୍ରାଣ ଉତ୍କଳମଣି ଗୋପବନ୍ଧୁଙ୍କ ସାଧୁସଙ୍ଗ ପ୍ରଭାବରେ ସତ୍ୟବାଦୀର ବକୁଳ-ବନରେ ହିଁ ପ୍ରାଣରେ ପ୍ରଥମେ ଦେଖାଦେଇଥିଲା । ମଧ୍ୟରେ ସ୍ୱରାଜ୍ୟ ଲଭପାଇଁ ଦେଶବ୍ୟାପୀ ଘୋର ସଂଗ୍ରାମ, ଉଦାର ଆତ୍ମବିସ୍ମୃତିର ପାବନ-ପ୍ରଭାବରେ ଗୁପ୍ତ ହେଲେ ମଧ୍ୟ, ଏହା କ୍ରମବର୍ଦ୍ଧିତ ହେଉଥିଲା । ଆଜି ଦେଶପ୍ରାଣରୁ ସେ ଶ୍ରେଷ୍ଠ ପ୍ରବଳ ନିଶା ଛୁଟିଯାଇଅଛି; ଦେଶର ଚତୁର୍ଦ୍ଦିଗରେ କି ବ୍ୟକ୍ତି, କି ସମଷ୍ଟି ସକଳ ଜୀବନରେ ସହସ୍ର ତ୍ରୁଟି, ନାନା ଅକ୍ଷମଣୀୟ ପ୍ରମାଦ ଦେଖାଦେଉଅଛି । ତ୍ୟାଗ, ପ୍ରୀତି, ପରପ୍ରବଣତା,

ସ୍ନେହ, ସେବାଭାବ, ସର୍ବୋପରି ବିଶ୍ୱ କଲ୍ୟାଣ ଆଧ୍ୟାତ୍ମିକ ବଳ ଭଗବଦ୍ ନିର୍ଭରତା ଦେଶରୁ କ୍ରମେ ଅନ୍ତର୍ହିତ ହୋଇ ଭବିଷ୍ୟତ ସର୍ବଧ୍ୱଂସର ସୂଚନା ସ୍ପଷ୍ଟ ହେଲଣି । ଏ ଅଉ ସ୍ଥିର ହୋଇ ବସି ରହିବାର ସମୟ ନୁହେଁ । ବିଭୀଷିକାମୟ ଏ ଘୋର ବିପତ୍ତି ବେଳେ, ସନାତନ ସଂସ୍କୃତିର ଆଶଙ୍କାମୟ ସନ୍ଧିସ୍ଥଳରେ ଭଗବାନ ହିଁ ଭରସା । "ସତର୍କ ହୋଇବା ଏକ ମୁଖ୍ୟ; ଡାକିବା ନାରାୟଣ ରଖ ।" ଉକ୍ତି ଅଛି, 'ବିପତ୍ତୌ ମଧୁସୂଦନ' । ଏ ଦିଗରେ ବ୍ୟକ୍ତିଗତ, ଦଳଗତ ସକଳ ପ୍ରକାର ଉଦ୍ୟମ ଶୀଘ୍ର ଆରମ୍ଭ ହେବା ଆବଶ୍ୟକ । ଗୋପବନ୍ଧୁ ବିଶ୍ୱପ୍ରେମର ପରମ ଲୋତକ ଗଡ଼ାଇ, ଶୁଦ୍ଧ ସରଳ ଆସ୍ତିକ ପ୍ରାଣରେ ଗାଇ ପକାଉଥିଲେ—

ଯେତେବେଳେ ଯାହା ମାଗିଛୁ ହେ ବିଭୋ !
ତେତେବେଳେ ତାହା ଦେଇଛ,
କେତେ ଅପରାଧ, କେତେ ଅନାଚାର,
କ୍ଷମାନିଧି ସବୁ ସହିଛ !

ସକଳ ଅପରାଧ, ଅନାଚାର ଭୁଲାଇ, ମହା ମହା ଅଭାବ ଅନ୍ତରାୟ ଅପସାରିତ କରି ଦେଶକୁ ଚରମ ଆକାଙ୍କ୍ଷାର ପରମ ପରିତୃପ୍ତି ପଥରେ ସୁଦ୍ରୁତ ଅଗ୍ରଗତି ଦେବା ପାଇଁ ଜନ-ପ୍ରାଣରେ ପ୍ରବଳ ଭଗବଦ୍ ଭକ୍ତି, ଅତୁଟ ଧର୍ମବିଶ୍ୱାସ ଫୁଟାଇବା ହିଁ ଏକମାତ୍ର ଉପାୟ, ଏହା କେହି ଅସ୍ୱୀକାର କରି ନ ପାରେ । ଭାଗବତ କହେ, "ଅଣିମା ଆଦି ସିଦ୍ଧି ଯେତେ, ମୋ ଭକ୍ତ କରିଣ ମୁକତେ ।" ପ୍ରାଣରେ ଏ ମହାପ୍ରେରଣା, ବନ୍ଧୁ ପ୍ରାଣରୀ ଉଦ୍-ବୋଧନ ପାଇଁ ଜନସାହିତ୍ୟ ଲେଖିବାର ସମୟ ଉପସ୍ଥିତ ।

ଏ ଦିଗରେ ଏ ଦୁଇ ଚାରି ଖଣ୍ଡି କ୍ଷୁଦ୍ର ପୁସ୍ତିକା କିଛି ନୁହେ । କବି ଓ ଲେଖକମାନେ ଏ ଦିଗରେ ନିଜ ନିଜର ସବଳ ଲେଖନୀ ଚାଳନା କରନ୍ତୁ, ଏହା ମୋର ପ୍ରାଣର ବ୍ୟାକୁଳ ଆକାଂକ୍ଷା ।

ସତ୍ୟବାଦୀର କର୍ମସଙ୍ଗୀ, ଉତ୍କଳମଣିଙ୍କର ଶ୍ରେଷ୍ଠ ଶିଷ୍ୟ ଶିକ୍ଷାମନ୍ତ୍ରୀ ଶ୍ରୀମାନ୍ ରାଧାନାଥ ନିଜର ଗୁଣଗ୍ରାହିତାରେ ଏ ପୁସ୍ତକ କେତେ ଖଣ୍ଡି ଛପାଇବାକୁ ଯାଇ ମୋତେ ବଡ଼ ଉତ୍ସାହିତ କରିଅଛନ୍ତି । ସେଥିପାଇଁ ଶେଷରେ ଆଶୀର୍ବାଦ କରୁଅଛି—ବିଭୁ ତାଙ୍କୁ ବର୍ତ୍ତମାନର ଜଟିଳ କର୍ମକ୍ଷେତ୍ରରେ ଯଶସ୍ୱୀ କରିବା ସଙ୍ଗେ ସଙ୍ଗେ ଦୀର୍ଘଜୀବନ ଦେଇ ତାଙ୍କ ଅନ୍ତରର ସ୍ୱାଭାବିକ ଭଗବତ୍ ପ୍ରାଣତା ଓ ପରମ ପ୍ରୀତିକୁ ବଳବତ୍ତର କରନ୍ତୁ ।

ଶ୍ରୀ ବାସୁଦେବ ମହାପାତ୍ର

# ସୂଚିପତ୍ର





# ଭାବେ-ଭୋଳା

## ବିଚିତ୍ର ବଟକାର

ଜୟ ସାକ୍ଷୀ-ଗୋପୀନାଥ ଭକ୍ତ ଦୁଃଖହର,
ଜୟ ଦ୍ୱିଜକନ୍ୟା ଲକ୍ଷ୍ମୀ- ପ୍ରଣୟ-ପସର ।
ଜୟ ଦୀନବନ୍ଧୁ ନଟ- ବର ବେଶଧାରୀ,
ଜୟ ଭକ୍ତଭାବେ ଭୋଳା, ବୈକୁଣ୍ଠବିହାରୀ ।
ଜୟ ହେ ତ୍ରିତାପହାରୀ କଇବଲ୍ୟଦାତା,
ଜୟ ଜୟ ଚକାଡୋଳା ଜଗତକରତା ।
ଜୟ ଜୟ ଜଗନ୍ନାଥ ନୀଳାଦ୍ରି-ବିହାରୀ,
ଭକତ-ପରାଣସଖା ଜୟ ବଂଶୀଧାରୀ ।
ବଂଶୀନାଦ ବାଜୁ ପ୍ରାଣେ ଗାଏ ଭକ୍ତ-ଯଶ,
ଭକ୍ତ-ଯଶ ଗାଉ ଗାଉ ହେଉ ଦିନ ଶେଷ ।
ଭକତ-ପରାଣ-ଟାଣ, ଭକତ-ଦୃଢ଼ତା,
ଚହିବାକୁ ଦିଅ ଭାଷା ବଚନ-ବିଧାତା ।
ଗଙ୍ଗାନଦୀ ପୂର୍ବ ତୀରେ ଅଛି ଦିବ୍ୟ ଗ୍ରାମ
କୃଷ୍ଣନଗର ନିକଟେ ଅତି ହିଁ ସୁଷମ ।
ବହୁଦିନ ତଳ କଥା ଥିଲକ ବ୍ରାହ୍ମଣ,
କଟିଯାଏ କାଳ କରି ପୁରୋହିତ କାମ ।

ଭାଗ୍ୟକୁ ତା ପ୍ରିୟା ଥିଲ  ପରାଣ-ଦୋସର,
ଦେବତାଙ୍କୁ ବଳି ପତି  କରଇ ଆଦର ।
ଘରକୁ ନନ୍ଦନ ଏକ  ସୁଢ଼ଳ ସୁନ୍ଦର,
ଅତନୁଁ ଗୁଣର, ବାଣୀ  ଅମୃତୁଁ ମଧୁର ।
ସୁଷମା କୋଳର ଝିଅ,  ନାହିଁ ତା ଉପମା,
ସତି ସମ ନହିଲେ ହେବେ  ତାର ଉମା-ରମା ।
ଦରିଦ୍ର ବ୍ରାହ୍ମଣ ନାହିଁ  ସମ୍ପଦ ବିଶେଷ,
ନିତି ଯାହା ଅରଜନ୍ତି  ନିତି ହୁଏ ଶେଷ ।
କାଲିକୁ ସଞ୍ଚି ରଖିବା  ନାହିଁ ତାଙ୍କୁ ଜଣା,
ସାରନ୍ତି ସମସ୍ତ କରି  ଅଛିଥି ଅଛିନା ।
ଦିନେ ଯଜମାନ ଘରୁ  ଫେରେ ବିପ୍ରବର,
ବାଟରେ ଦେଖଇ ଘୋର  ଗୁଣ୍ଡି ଗୁ ଗହଳ ।
ଝିଅଟିଏ ବିକେ ଶାଗ  ଗଛମୂଳେ ବସି,
ହସି ହସି ଭୁଲାଦିଏ  ନବୀନ ବୟସୀ ।
ଅଦ୍ଭୁତ ତୁଳନା ତାର  ଏକ ବିଟକର
ଭିନ୍ନ ଭିନ୍ନ ପରିମାଣ  ଭୁଲାଦିଏ ଖାରୁ !
ଦେଖିବାକୁ ଆସି ଲୋକେ  କିଣୁଛନ୍ତି ରସି;
ବେତାଳ ସରିଲା ଶାଗ  ଗୁହୁଁ ଗୁହୁଁ ଆସି ।
ପଣ୍ଡିତ ବ୍ରାହ୍ମଣ ତାର  ବୁଦ୍ଧି ହେଲା ବଣା,
ଭାବି ନ ପାରିଲା କି ସେ  ବିଚିତ୍ର ଘଟଣା !
ବଣିଜ ସରିଲା, ବାଳୀ  ଏକାନ୍ତରେ ଡାକ
ପଚାରେ ଗୁପତେ, "ଝିଅ,  ଗୁଣି ଜାଣୁନ କି ?
ସଂସାରେ ନ ଥିବା କଥା  ଆଜ ମୁଁ ଦେଖିଲି,
ଏକ ବିଟକର, ହେଉ  ସରବେ ତଉଲି !

କାହୁଁ ତୁ ପାଇଲୁ ଦ୍ରବ୍ୟ ଏହି ବଟକରା ?
ଏ ଯେ ଶାଳଗ୍ରାମ ଶିଳା, ଆଖି ନ ଦେଖିଲୁ !
ଦିଅନ୍ତୁ କି ନିଅ ମୋତେ, ପୂଜନ୍ତି ଯତନେ
ଅରପନ୍ତି ନଇବେଦ୍ୟ ଭକ୍ତିପୂତ ମନେ ।”
“ନାହିଁ, ନା ସାଆନ୍ତ ମୁଁ ତ ନ ପାରିବ ଦେଇ,
କେତେ କାନ୍ଦି, କଷ୍ଟ ପାଇ ଦେଇଛନ୍ତି ବାହି ।
ବାଜୁଛି ସ୍ୱଭାବ ହିଁ ଜା- ଇଲା ବଟକରା,
ଗଞ୍ଜଣା ସହିଲ ବାପ୍ପା ସେଥିପାଇ ପରା ।
ଭାଇ ଭାଉଜଙ୍କ ଦଣ୍ଡ କି କହିବ ନନା !
ବଟକରା ଲାଗି ଘର କରିଦେଲେ ମନା ।
ଗଙ୍ଗାପାଣି ପିଇ ଦୁଃଖେ ଭୋକଶୋଷ ଭୁଲି
ବାକଲେ ବାପ୍ପାଙ୍କୁ ଡାକି କେତେ ସେ କାନ୍ଦିଲି !
ଗଙ୍ଗାଜଳେ ପାଦତଳେ ବାଜେ ଶିଳା ଆସି,
ଗୋଟାଏ ଏ ବଟକରା, ଦେଖି ହେଲି ଖୁସି ।
ଶୂନ୍ୟରୁ ଶବଦ ହେଲା ଶିଳା ନିଅ ତୋଳି,
ଯେତେ ଯେ ମାଗିବ ଦିଅ ଏଥିରେ ତଉଲି ।
ଏହି ବଟକରା ଦେଖି ଘରେ ହେଲେ ଖୁସି,
ଏହା ଯୋଗୁଁ ବାକେ ସିନା ଶାଗ ହସି ହସି ।”
“ଶିଳା ତୋର ଗଣ୍ଠିଧନ, ବାକା ତୋର ଖେଳ,
ଜାଣୁଛି ମୁଁ, ଦେବ ଧନ ଯେତେ କରୁ ମୂଲ ।
ଧନ ଦେଇ ଦ୍ରବ୍ୟ ନେବ; ପୁଣି ମୁଁ ବ୍ରାହ୍ମଣ,
ପୂଜି ଶାଳଗ୍ରାମ ତୋରେ କରିବ କଲ୍ୟାଣ ।”
“ତୁମ କଥା ଶୁଣି ନନା ଘରେ ମନେମନ,
ତିନି କୋଡ଼ି ଖଣ୍ଡେ ଟଙ୍କା, ସତେ ଏତେ ଧନ

ଦେଇ କି ପାରିବ ? ତେବେ ବିକି ବିଟକଣି,
ବୃନ୍ଦାବନଧାମ ଆଶ୍ରା କରନ୍ତି ମୁଁ ପଣି !
ନଟବର ବେଶ ଠାଣି, ନିତି ନିତି ଦେଖି
ସଫଳ ହୁଅନ୍ତା ଜନ୍ମ, ସାର୍ଥକ ଏ ଆଖି ।"
ଏକାନ୍ତ ବିଷଣ୍ଣ ମନେ ଫେରେ ଦ୍ୱିଜ ଘର;
ତିନି କୋଡ଼ି କାହୁଁ ହେବ, କରଇ ବିଚାର ।
ଭୋକଶୋଷ ଗଲା ଭୁଲି ନ ରୁଚିଲା ଅନ୍ନ;
ବ୍ରାହ୍ମଣୀ କହଇ "ଅଙ୍ଗୁ ଅଲଙ୍କାର ଘେନ ।
ବିକି ଧନ ତିନି କୋଡ଼ି ମିଳିବ ନିଶ୍ଚୟ;
ଏଥିକି ଭାବନା କିଆଁ ମନ କର ଥୟ ।
ହାତରେ ତ ହେଲେ ଧନ ହେବ ଅଲଙ୍କାର,
ମାଟିରୁ ତ ରୂପା, ସୁନା ମାଟିର ବିକାର ।
କି ହେବ ସେ ଅଲଙ୍କାର କିବା ସେହି ଧନ,
ପରାଣ-ପିପାସା ଯହିଁ ନ କରେ ପୂରଣ ?"
କଣ୍ଠୁ ହାଣ୍ଡ କାଢ଼ି ବାଳା ଦେଲା ହସି ହସି,
ବ୍ରାହ୍ମଣ କହିଲା, "ଧନ୍ୟ ଧନ୍ୟ ତୁ ପ୍ରେୟସୀ !"
ତିନି କୋଡ଼ି ଦାମ କରି ବିକିଦେଲା ହାର,
ଶାଗ ବିକାଳୁଣୀ ପାଖେ ହୋଇଲା ହାଜର ।
ଶାଳଗ୍ରାମ ପାଇଁ ଦିଏ ତିନି କୋଡ଼ି ଗଣି,
ଦଶ ଟଙ୍କା ନେଲା ଦେଲା ଉପକାର ମାନି ।
ଭକ୍ତିରେ ଶିରରେ ଧରି ଶାଳଗ୍ରାମ ଶିଳା
ନାଚି ନାଚି ଦ୍ୱିଜ ଫେରେ ହୋଇ ଘରେ-ଭୋଳା ।
ଦେଖାଇଲା ଗୃହିଣୀକୁ କହଇ ପ୍ରଶଂସି,
"ଘରକୁ କଇବଲ୍ୟଦାତା ମିଳିଗଲେ ଆସି !

କି ଦେଇ ପୂଜିବା ପ୍ରିୟେ ! ଗରିବର ଘର,
ଭକ୍ତିଭରେ ଅରପିବା ଯା ଅଛି ସମ୍ଭାର ।"
ଶିରେ ଶିଳା ବହି ଦ୍ୱିଜ ଗଙ୍ଗାକୂଳେ ଗଲ,
ବିଷ୍ଣୁ ମନ୍ତ୍ର ବୋଲି ଶତ ସ୍ନାନ କରାଇଲ ।
ଶିଳା କହେ, "ବ୍ରାହ୍ମଣରେ ଭାଗ୍ୟ ତୋର ମନ୍ଦ,
ଭକତ ପାଖୁ ଆଣିଲୁ କରି କେତେ ଛନ୍ଦ;
ମହା ଅମଙ୍ଗଳ ହେବ ସରଜିବୁ ଜାଣ;
ଶାଗ ବିକାଳୁଣୀ ପାଖେ ଦିଅ ଫେରାଇଣ ।"
"କି କଥା ଉଚ୍ଚାରି କହ, ଆହେ ଦୀନବନ୍ଧୁ!
ମରଣ ଅମୃତୁଁ ବଳେ, ତୁ ତ କୃପାସିନ୍ଧୁ !
ଭାଗ୍ୟବଳେ ହାତେ ମୋର ଦେଇଅଛୁ ଧରା,
ନ ଛାଡ଼ିବି, କରିବି ମୋ ପରାଣ-ପସରା ।"
ବ୍ରାହ୍ମଣୀ ସ୍ନାନ କରୁଛି ଜାହ୍ନବୀର ଜଳେ
ଶରଦ-ସୁନ୍ଦର ବାଳ ଡାକି କହେ କୂଳେ,
"ଘର ଲିପି ପୋଛି ବେଗେ କର ଆଣ ତୋରା;
ବଇକୁଣ୍ଠନାଥ ଘରେ ଆସୁଛନ୍ତି ପରା !"
ଏକ ଲୟେ ଗୃହେଁ ବାଳା, ଭାବେ ଆଚମ୍ବିତ,
ଲିପିପୋଛି ରଖେ ଘର ପ୍ରଭୁ ଆସିବେ ତ ?
ସିଂହାସନେ ସ୍ଥାପି ଶିଳା, ଷୋଡ଼ଶୋପଚାରେ
ଭକ୍ତି ଭାଳ ପୂଜେ ଦ୍ୱିଜ, ଦରିଦ୍ର-ବେଶରେ ।
ସ୍ୱପ୍ନେ କହେ ଶିଳା, "ବେଗେ ଫିଙ୍ଗିଦିଅ ମୋତେ
ନୋହିଲେ ନନ୍ଦନ ତୋର ନାଶିବ ନସ୍ତୁତେ ।"
"ନ ଫିଙ୍ଗିବି", କହେ ଦ୍ୱିଜ "ଦଣ୍ଡ ଇଚ୍ଛା ଯେତେ;
କେ କାହା ନନ୍ଦନ, ନାଥ ଯେବେ ଲୋଡ଼ା ତୋତେ ।"

ମାସ ନ ପୂରୁଣୁ ମଲା ମରଣ-ନନ୍ଦନ,
ପିତା ମାତା ମନେ, ପ୍ରଭୁ କାଟିଲେ ବନ୍ଧନ ।
ପୁଣି ସ୍ୱପ୍ନବାଣୀ ଶୁଣନ୍ତେ, "ନାଶିବ ତନୟା ।"
ପିତାମାତା ଭାବୁଛନ୍ତି, "ଛୁଟିଯାଉ ମାୟା ।"
ତନୟା ମଲା, ପୁଣି ଶୁଣନ୍ତେ ସ୍ୱପ୍ନବାଣୀ
"ନ ମାନିଲୁ କଥା ମୋର ନାଶିବ ବ୍ରାହ୍ମଣୀ ।"
ବ୍ରାହ୍ମଣୀ ଭାବଇ, "ସତେ ଏଡ଼େ ଭାଗ୍ୟ ହେବ,
ପତିମୁଖ ଦେଖୁଥିବ ପ୍ରାଣ ଉଡ଼ିଯିବ !"
ଗୋଟି ଗୋଟି ହୋଇ ଗଲେ ସୁତ, ସୁତା, ଜାୟା;
ବ୍ରାହ୍ମଣ ଭାବଇ, "ଏବେ ଛୁଟିଗଲା ମାୟା,
କପାଇଁ ଭାବନା, ଆଉ କାହା ପାଇଁ ଡର ?
ବନ୍ଧିବି ମସ୍ତକେ ସଦା, ନ ହେବେ ଅନ୍ତର ।"
ଶିରେ ଶିଳା ବନ୍ଧେ ପ୍ରେମେ, ସଜାଡ଼େ ପଗଡ଼ି,
କେବେ ହସେ, କେବେ କାନ୍ଦେ, ନାଚେ ଘଡ଼ି ଘଡ଼ି ।
ପୁଣି ଶୂନ୍ୟବାଣୀ ଶୁଣନ୍ତେ, "ପାଗଳ ପଣ୍ଡିତ !
ନ ମାନିଲୁ କଥା, ଶିରେ ହେବ ବଜ୍ରପାତ ।"
ବିପ୍ର କହେ, "ପଡ଼ୁ ବଜ୍ର ଶିର ପଡ଼ୁ ଛିଡ଼ି,
ନ ଭୋଗିବୁ ଆଉ ଶାଗ ଟୋକେଇରେ ସଢ଼ି !"
ଗଙ୍ଗାକୂଳେ ପୂଜେ ବିପ୍ର ଢିଲା ଆପି ଶିରେ
ସୁଢ଼ଳ ସୁନ୍ଦର ଦୁଇ ବାଳକ ମିଳିଲେ ।
କଳା ଧଳା ଦୁଇ ତନୁ, ଓଷ୍ଠ ବିମ୍ବ ଜିଣି,
କାମ-ପଞ୍ଚଶର ସେ କି ବଙ୍କିମ ଚାହାଣି !
ପାଣି ଘଣ୍ଟି ଦୁଇ ସଖା ଲଗାଇଲେ ନାଟ;
ଛୁଟିକା ଚଢ଼ିଲା ଅଙ୍ଗେ ବ୍ରାହ୍ମଣ ଉଚ୍ଛାଟ !

ବ୍ରାହ୍ମଣ—ଭଲ ଲୋକେ ! ପୂଜାକରେ    ଦଖୁନାହିଁ କରେ ?
    ମୋ ଅଙ୍ଗେ ଛିଟିକା ପଡ଼େ,    ଭଗବାନ ଶିରେ !
ବାଳକେ—ଭଗବାନ ଶିରେ ଛିଟା    ସତେ ଗଲା ପଡ଼ି !
    ଜାଣିନାହୁଁ ବାବା ! ରାଗେ    ଦିଅ ନାହିଁ ରଡ଼ି ।
ବ୍ରାହ୍ମଣ—କାହିଁ ତୁମ ଘର ବାବୁ,    କି ମଧୁରବାଣୀ !
    ଆଖି ଦେଖିବ କି ଆଉ    ଏ ସୁନ୍ଦରଠାଣି ?
    ରାଗିବି କି ଧନ ! ଦୁହେଁ    ଖେଳୁଥାନ୍ତ ଜଳେ,
    ପୂଜା ଛାଡ଼ି ରହିଁଥାନ୍ତି    ବୁଢ଼ା କାଳେ କାଟ ଲି !
ବାଳକେ—କାହିଁକି ବିକଳ ବାବା !    ନିକଟରେ ଥାଉଁ;
    ଡାକିଲେ ପରାଣ ଖୋଲି,    ଆସି ମିଳିଯାଉଁ ।
ବ୍ରାହ୍ମଣ—କି ନାମେ ଡାକିବି ଧନ !    କେଡ଼େ ଦୟା ସତେ !
    ବାରେ ଦେଖି ତୃପ୍ତ ହେବ    କେବା ଏ ମରତେ ?
ବାଳକେ—ନୁହେ ଏକ ନାମ, ଯିଏ    ଯେଉଁ ନାମେ ଡାକୁ
    ଭାବ ଭରି ଡାକଦେଲେ,    ଆସି ମିଳୁ ତାକୁ ।
ଶ୍ୟାମ ବାଳକ—ଆଚ୍ଛା ଏ ମୁରଲୀ ନିଅ, ଦେବତ ବଜାଇ,
    ବଜାଇଲେ ସେହିକ୍ଷଣି,    ଆସିବି ମୁଁ ଧାଇଁ ।
ଗୌର ବାଳକ—ନିଅ ବାବା ! ଏଇ ଫୁଲ, ଦେଖାଅ ତ ହାତ;
    ରଖିଥିବ ପାଖେ ସବୁ    ଶୁଭ ହେବ ଜାତ ।
    ଚାଲିଯାନ୍ତି ଦୁଇ ସଖା,    ଭାବେ ଦ୍ୱିଜ ରହି,
    ଏ ଅପୂର୍ବ ରୂପରାଶି    ମିଳିବ କି କାହିଁ ?
    ବ୍ରାହ୍ମଣ ଦେଖଇ ପୁଷ୍ପ    ଅଛି ହସ୍ତେ ତାର,
    କି ସୁନ୍ଦର ଗଠନ ତା,    ବାସ ମନୋହର !
    କି ସ୍ୱର୍ଗୀୟ କୁସୁମ, ବାସ    ରସିକ ଲୋଭଇ ;
    ରାଜ୍ୟ ନୃପେ ଦେଲା ବିପ୍ର    ସେହି ପୁଷ୍ପ ନେଇ ।

ରାଜା ହନ୍ତୁ ପାଟରାଣୀ ନେଲେ ସେହି ଫୁଲ,
ଅଭିମାନେ ସାନରାଣୀ କଲେ ଗଣ୍ଡଗୋଳ ।
'ଦୋସର କୁସୁମ ଆଣ' ରାଜା ଦ୍ୱିଜେ କହି;
ବାଳକଙ୍କୁ ଡାକେ ବିପ୍ର ମୁରଲୀ ବଜାଇ ।
କଳା ଧଳା ଦୁଇ ତନୁ ନାଚଲେ ଆଗରେ
ଘରେଖେଳ ବିପ୍ର-ନେତ୍ରୁ ପ୍ରେମ-ଅଶ୍ରୁ ଝରେ ।
ଦ୍ୱିଜ କହେ, "ଧନ୍ୟ ହେଲା ମୋର ଚର୍ମଆଖି,
ଘରୁଥିଲି, ସତେ ଆଉ ପାଣ୍ଡବ କି ଦେଖି !
ପାଟରାଣୀ ତୁମ ଫୁଲ ନେଲେ ଗୁଣ ଜାଣି,
ସାନ ରାଣୀ ବାଞ୍ଛା ଏବେ ଦିଅ ଫୁଲ ଆଣି ।"
ବାଳକେ ଘସିଲେ, ଫୁଲ ନାହିଁ ଆଉ ସଙ୍ଗେ;
ମୁଦ ଆଖି ବଗିଚାକୁ ନେଇଯିବୁ ରଙ୍ଗେ ।
ଗୋଟିଏ କାନ୍ଦିକ ତୋଳ ଯେତେ ଇଚ୍ଛା ଫୁଲ;
ଦେଖାଇବୁ ଦିବ୍ୟ ସ୍ଥାନ ଆମ ସଙ୍ଗେ ଚାଲ ।
ବ୍ରାହ୍ମଣ ମୁଦିଲା ଆଖି ଫିଟାଇଲା ପୁଣି,
କ୍ଷଣକେ କେ ଦିବ୍ୟସ୍ଥାନେ ଥୋଇଦେଲା ଆଣି !
ଚତୁର୍ଦ୍ଦିଗେ ବୃକ୍ଷଲତା ପୁଷ୍ପ ମନୋହର
ବାସେ ଭରି ବହେ ମନ୍ଦେ ମଳୟ ମଧୁର ।
ମଧ୍ୟେ ପୁରୀ ଦିଶେ ସେ କି ବାଇକୁଣ୍ଠପୁର !
କଳା ଧଳା ଦୁଇ ବାଳ ଅଛନ୍ତି ଦୁଆରେ ।
ସାହସ ବାନ୍ଧଣ ଦ୍ୱିଜ ପୁରମଧ୍ୟେ ଗଲା,
ଶୂନ୍ୟ ରତ୍ନ-ସିଂହାସନ ଭିତରେ ଦେଖିଲା ।
ମୂରଚ୍ଛି ଚରଣ ତଳେ କଲାକ ପ୍ରଣତି,
ଚିନ୍ତା ଶିଳା ଖସି ଲୋଟେ ବକଳ ତା ମତି ।

ଗୋଟାଇ ବସିଲ ଶିଳା, ଯାଏ ନାଦେ ଫାଟି,
ଲକ୍ଷ୍ମୀନାରାୟଣ ତନୁ ଉଠନ୍ତ ଚହଟି ।
ପୃଷ୍ଠିଙ୍କତଳେ ସିଂହାସନ ମୁଖେ ମଧୁହାସ,
ଭାଷିଲେ, "ଧନ୍ୟ ତୁ ଦ୍ୱିଜ ! ଧନ୍ୟ ତୋ ବିଶ୍ୱାସ !
କେତେ ଦୁଃଖ ଦେଲି, ତୁହି ରହିଲୁ ଅଟଳ;
ମେରୁଠାରୁ ଦୃଢ଼ ତୁହି, ହୃଦ କି ବିଶାଳ !
ସୁତ-ସୁତା-ଦାର ଗଲେ, ନ ହେଲୁ ତୁ ଖଳ;
ମୋଠାରେ ଅଚଳା ଭକ୍ତି ରଖିଲୁ ସମ୍ଭାଳି ।
ସେହି ଭକତର ବଳେ ବଇକୁଣ୍ଠେ ବସ,
ଏ ସରଗ ବଇଭବ କର ତୁ ସରସ ।
ସୁତ ସୁତା ଦାସ ଗୃହ ଗୃହ ପ୍ରାଣଧନ,
ଇହଲୋକ ପରଲୋକ କରି ବିସର୍ଜନ,
ଯେ ଭକତ ସବୁ ଛାଡ଼ି ଆଶ୍ରା କରେ ମୋରେ,
ପରାଣୁ ଅଧିକ ମୁଁ କି ଛାଡ଼ିପାରେ ତାରେ ?
ପରାଣୁ ବଳେ ଭକତ ତାର ପାଦଧୂଳି,
ପ୍ରେମେ ଧରି ଶିରେ ନାଚେ ଦେଇ କରତାଳି ।
ତୋ ଧରମେ ମର୍ତ୍ତ୍ୟଦେହେ ଭକତ ନାମୀୟା !
ଆସିଲୁ ସରଗେ; ତୋର ସୁତ-ସୁତା-ଜାୟା !
କରନ୍ତି ପ୍ରଣାମ ଚାହିଁ ନିଅ ତାଙ୍କୁ କୋଳେ;
ଚାହିଁଥିଲେ ପଥ ତୋର ପରାଣ ଆକୁଳେ ।"

× × ×

"ଜୟ ହେ ଯୁଗଳସଖା ଶ୍ୟାମ-ଗୌରତନୁ !
ସମ୍ମୁଖରେ ନାଚୁଥାଅ ନ ଯାଅ ନୟନୁ ।

ଜୟ ଲକ୍ଷ୍ମୀନାରାୟଣ ବୈକୁଣ୍ଠ ସୁନ୍ଦର
ଜୟ କଇବଲ୍ୟଦାତା ଭକତବତ୍ସଳ !
ଭକତି-ବିଶ୍ୱାସ ଯାହା ବଡ଼ ବୋଲି ଘେନ,
ସେସବୁ ତ ତୋର କୃପା ତୋର ପ୍ରେମଦାନ !
ବିଶ୍ୱାସ-ଭକତି ଦିଅ, ନାଚୁ ପ୍ରାଣ ପୂରି,
ଯାଉ ପ୍ରାଣ, ଜିହ୍ୱା କହୁ- ଆଜି ହରି ହରି ।

———

# ଭିକାରୁଣୀ-ପୁଅ

ଗ୍ରୋଟ ଗ୍ରାମଟିରେ ରହେ ବିଧବା ବ୍ରାହ୍ମଣୀ,
ବଞ୍ଚେ ଭିକ୍ଷା କରି, ପ୍ରେମେ ବିଷ୍ଣୁ ନାମ ଗୁଣି ।
ଛଅ ବରଷର ଶିଶୁ ନାମ ତା ମୋହନ;
ଦୁଃଖିନୀର ଗଣ୍ଠିଧନ ବିଧବା-ଜୀବନ ।
ଭିକ ଆଣି ରାନ୍ଧି ଦିଏ ପୁଏ ପୂରି ଗ୍ରାସ,
ନ ବଳିଲେ, ନାମ ନିଏ, ରହେ ଉପବାସ ।
ଗ୍ରାମେ ରହିଛନ୍ତି ବହୁ ଧନୀ, ଅର୍ଥପତି;
ବିଧବାର ଦୁଃଖେ କାର ନ ବଳଇ ମତି ।
ଅନ୍ତରର ଦୁଃଖ ରଖି ଅନ୍ତରେ ସାଉଁଟି,
ଉଦାସେ ଜପଇ ନାମ, ଯାଏ ଦିନ ବିତି ।
ବିଧବା ମନରେ ଭାବେ, ବ୍ରାହ୍ମଣ-କୁମର,
ଦି ଅକ୍ଷର ନ ପଢ଼ିବା ଲୁହେ ତ ସୁନ୍ଦର ।
ଦୁଇ କୋଶେ ଦୂରେ ଅଛି ପାଠଶାଳା ଜାଣି,
ପୁଅକୁ ସଙ୍ଗରେ ଘେନି ଚଳିଲା ବ୍ରାହ୍ମଣୀ ।

ହାତଗୋଡ଼ ଧରି ଗୁରୁ ସଜ କରାଇଲେ;
ଅବୋଧ ଶିଶୁକୁ ପଦେ ସମରପି ଦେଲେ ।
"କି ଦେଇ ତୋଷିବି ଗୁରୁ ଘେନା ଭିକାରୁଣୀ,
ଜ୍ଞାନଦାନ କର" କହେ, "ଥିବି ଚିରଋଣୀ ।"
ଗୃହୁ କୋଶ ଯାଇ ଆସି ପଢ଼େ ଶିଶୁ ନିତି,
ବାଟରେ ଜଙ୍ଗଲ ପଡ଼େ ଲାଗେ ବଡ଼ ଭୀତି ।
କେବେ ବେଳ ବୁଡ଼େ ମାଡ଼ ଆସଇ ଅନ୍ଧାର,
ସାଥୀ ନାହିଁ, ଶିଶୁପ୍ରାଣ ହୁଅଇ କାତର ।
ସବୁରି ତ ଆସିଥାନ୍ତି ଘରଠୁଁ ଚାକର,
ମୋହନର କିଆଁ ନାହିଁ, ଭାଲେଣି ତାହାର ।
ଅନ୍ତର ଫିଟାଇ ଦୁଃଖ କହିଲା ମାଆକୁ,
"ଆମର କି କେହି ନାହିଁ ବାଟେ ଜଗିବାକୁ ?
ମାଆ ଲୋ ! ବାଟରେ ବଣ, ମାଡ଼େ ବଡ଼ ଡର,
'ଅନ୍ଧାର ହୋଇଲେ ଦେହ କମ୍ପେ ଥରଥର ।"
ବିଧବା କୁମର ଦୁଃଖ ନ ପାରିଲା ସହି;
ଚକ୍ଷୁ ଫାଟି ଝରି ଝରି ଅଶ୍ରୁ ପଡ଼େ ବହି ।
କୁମରକୁ କୋଳେ ଧରି ଦିଅଇ ଚୁମ୍ବନ,
'ଅଛନ୍ତି, ଅଛନ୍ତି' ଭାଷେ ମଧୁର ବଚନ ।
"ଅଛନ୍ତି ଗୋପାଳ ସେ ତ ଦେଖୁଛନ୍ତି ସବୁ;
ରହିଛନ୍ତି ସବୁ ସ୍ଥାନେ କିଆଁ ଭୟ ବାବୁ ?"
"ସତେ; ସତେ, ମାଆ ! ତେବେ ଅଛନ୍ତି ତ ଜଣେ !
କି ବୋଲି ଡାକିବି ତାଙ୍କୁ ଭୟ ହେଲେ ମନେ ?"
"କି ବୋଲି ଡାକିବୁ ? କିଆଁ ? 'ହେ ଗୋପାଳ ଭାଇ'
ଡାକ ଦଡ଼େ ସେ ତ ନିଶ୍ଚେ ଆସିବେଇଁ ଧାଇଁ ।"

ଅନ୍ତର-ଉଲ୍ଲାସେ ଶିଶୁ ନାଚେ ମାତୃକୋଳେ,
ମାତାର ଲୋତକଧାର ପୋଛଇ ଅଞ୍ଚଳେ ।
"କିଆଁ କାନ୍ଦୁ ମାଆ ?" କହେ, "ଦୁଃଖ କର ଦୂର;
ଗୋପାଳ ଭାଇଙ୍କୁ ସବୁ କହିବି ଏଥର ।"
ମାଆ—ବୁଝିନୁ ଗୋପାଳ ଭାଇ ତୋର ସବୁ କଥା
ମୁଁ ତ ଭିଖାରୁଣୀ ଆଶା କରିଛୁ ସର୍ବଥା ।
ମହାଭାବେ ବୁଡ଼େ ମାଆ, ରାତି ଗଲା ପାହି;
ହରଷେ ମୋହନ ପଥେ ଚଳେ ଗୀତ ଗାଇ ।
ଯୋଗକୁ ବୁଡ଼ିଲା ଦିନ ଫେରଇ ମୋହନ,
"ହେ ଗୋପାଳ ଭାଇ ବୋଲି ଡାକେ ଦେଖି ବନ ।
ଘନ ଘନ ଡାକ ଛାଡ଼େ ହେ ଗୋପାଳ ଭାଇ !
ଅନ୍ଧାରେ ମାଡ଼ୁଛି ଡର ଲୁଚ ନା ତ ତୁହି ।"
ବାଳକର ବିମଳ ପ୍ରାଣ, ଶୁଦ୍ଧ ସେ ବିଶ୍ୱାସ,
ଭକତର ଆର୍ତ୍ତ ଡାକ, ପରାଣର ତ୍ରାସ,
ତରଳାଇ ଦେଲା ପ୍ରାଣ ଆସିଲେ ତ ଧାଇଁ,
ଭକତବତ୍ସଳ ପ୍ରଭୁ ସେ ତ ଭାବଗ୍ରାହୀ ।
ବାଳକ ଦେଖଇ ଦିବ୍ୟ ଜ୍ୟୋତି-ପରସରେ
ତା ଗୋପାଳ ଭାଇ ହସି ହସି ନୃତ୍ୟକରେ ।
ନୀଳ-ନବଘନ-ଶ୍ୟାମ, ସୁରଙ୍ଗ ଅଧର,
ମୁଖେ ସୁମଧୁର ହାସ ଶିରେ ଶିଖିଚୂଳ,
କୁଞ୍ଚି କୁଞ୍ଚି କେଶ ଦାମ, ମୁଖ ଦିଶେ ଚୋର,
କଣ୍ଠରେ ରତନମାଳା ହାତେ ବଂଶୀ ପର !
ବାହୁରେ ବଳୟ ଯୋଡ଼ି ଦିଶେ କି ସୁନ୍ଦର !
ପିନ୍ଧିଛି ଯତନେ ଭିଡ଼ି କାଛ ପୀତାମ୍ବର ।

ନାଚି ନାଚି ଆସେ ଘରୁ, କେତେ ଠିଆହୁଏ;
ବଙ୍କିମଠାଣିରେ ରହି ମୁରଲୀ ବଜାଏ ।
"ଆରେ ବାଃ ! ଆରେ ବାଃ ! ଆସ ମୋ ଗୋପାଳ ଭାଇ,
କୁଣ୍ଢାଇ ଧରିବି ଆଜ ଛାଡ଼ିଦେବି ନାହିଁ !"
ଦୁଇ ଭାଇ କୋଳାକୋଳି, କେତେ ନାଚ ରଙ୍ଗ,
ନାଚିଲେ ପାଦପଲଛା, ନାଚିଲେ କୁରଙ୍ଗ ।
ଭାଇର ମୋହନ ବେଶ ଦେଖଇ ମୋହନ,
ଯେତେ ଦେଖିଲେହେଁ ସେ ଯେ ଦିଶଇ ନୂତନ !
କି ବିଚିତ୍ର ଭାଇ ତୁ ରେ ପାଇଲୁ ମୋହନ !
ଗଲା ତୋ ସଂସାର-ଭୟ, ଧନ୍ୟ ତୋ ଜୀବନ ।
ହାତ ଧରି ଭାଇ ଚାଲେ କଢ଼ାଇଣ ବାଟ,
ଗ୍ରାମ ପାଶେ ବୁଢ଼ି କହେ, "କି କି ହେବ ଭେଟି ।"
ମୋହନର କି ଆନନ୍ଦ, କେ ପାରିବ କହି ?
ମାଏ କହେ, "କି ସୁନ୍ଦର ମୋ ଗୋପାଳ ଭାଇ !
କି ଯୋଗରେ ମାଆ ଆଜି ପାଇଥିଲି ରାତି,
ଦେଖିଲି ଗୋପାଳ ଭାଇ, ତା ଦିବ୍ୟ ମୂରତି !
କାହା ଘରେ ଅଛି ମାଆ ଏ ସୁନ୍ଦର ପିଲା ?
ତା ପାଦଧୂଳିକି କିଏ ସରିହେବ ପରା !
ନାହିଁ, ନ ଥିବ ତ ପୁଅ ତା ଭଳି ଜଗତେ,
ହରଷେ ନାଚିଲି ମୁହିଁ, ଖେଳିଲୁ ତ କେତେ !
ଗ୍ରାମ ପାଖେ ବୁଢ଼ି ଭାଇ ହୋଇଲା ଅନ୍ତର,
କହେ, 'ପରେ ଦେଖାଦେବ' ବଚନ ମଧୁର ।"
କୋଳେ ଧରି ମାଆ ପୁଏ ପାଇଲେ ପରଶ
ଗୋପାଳର, ଦ୍ରବେ ପ୍ରାଣ, ମହାଭାବାବେଶ !

ମୋହନ ମୋହନ ନୂନେ: କେତେ ବଡ଼ ଦଶେ !
ପଗଣେ ବଜ୍ରକ୍ଷ ଖେଳେ ପରଶେ ପରଶେ ।
ବୁଝିଲ କାଙ୍ଗାଳ-ଧନ କୃପାମୟ ହରି
ଶୁଣିଲେ କରୁଣ ଡାକ ଘନେ କୃପା କରି ।
ଦ୍ରୌପଦୀ ଆରତ-ଡାକ, ଗଜେନ୍ଦ୍ର-କାକୁତି,
ବଜ୍ରନାଦେ ଶୁଭଥିଲ ମୃଗୁଣୀର ସ୍ତୁତି ।
ନିରାଶ୍ରୟ ବାଳକର ଶୁଦ୍ଧ ପ୍ରେମଡାକ
ନ ଶୁଣିଲେ ରହନ୍ତା କି କେଉଁ ପ୍ରଭୁ ଠେକ ?
ମାଆ ପୁଅ ଘରେ ଭେଳ ରାତି ଗଲା ପାହି
ନସି ପୁଅ ଗୃଲେ ପଢ଼ି, ଭୟ ଲେଶ ନାହିଁ ।
କେବେ ହେଲେ ଭୟ, ଡାକେ, "ହେ ଗୋପାଳ ଭାଇ !
ବଡ଼ ଡରମାଡ଼ୁଛି ମ ! ଆସ ବେଗେ ଧାଇଁ ।"
ଗୋପାଳ ଆସନ୍ତି ଧାଇଁ ଭାଇ ହାତ ଧରି
କଡ଼ାନ୍ତି ବାଟ, ଲୁଚନ୍ତି ବନ କରି ପାରି ।
ପାଠଶାଳାରେ ଦନେକ ପଡ଼ିଲା ବଗୃର,
ଗୁରୁ ପିତୃଶ୍ରାଦ୍ଧ, ଦେବ କିଏ କି ବେଭାର ।
ଘିଅ, ଦୁଧ, ଆଳୁ, ମାଛ, ସାରୁ, ବାଇଗଣ,
ଶକ୍ତି ଦେଖି ବାଣ୍ଟି ନେଲେ ଗୁରୁ ଜଣ ଜଣ ।
ମୋହନ ଭିକାରୀ ପିଲା ତାହା ଆଡ଼େ କେହି
କି ଦେବ ସେ ? ଅନାଦରେ ଘୃଁହିଲେ ତ ନାହିଁ ।
ବାଧିଲ ବାଳୁଳ ପ୍ରାଣେ, ନେହୁ ଝରେ ନୀର;
"କି ଦେବି ମୁଁ ଗୁରୁଦେବ !" କହେ "ଆଜ୍ଞାକର ।"
"ହଉ, ହଉ, କି ଦେବୁ ତୁ ! ଆଣ ଟାଳେ କ୍ଷୀର;
ସେତିକି ଯଥେଷ୍ଟ ତୋର ଗରବର ଘର ।"

ମାତା ପାଶେ ପୁଅ କହେ, ଶ୍ରାଦ୍ଧ ଗୁରୁଘରେ
କାଲି ତାଙ୍କ ଦୁଧ ନେବ ଶ୍ରଦ୍ଧା ଅଛି ମୋରେ ।''
ଭିକାରୁଣୀ ମାଆ କାହୁଁ ଯୋଗାଡ଼ନ୍ତା କ୍ଷୀର,
କହିଲା ଗୋପାଳ ଦେବ ନ ହୁଅ ଅଧୀର ।
ଜଗତର ଘର ସେହୁ ଅଛି ଶିରେ ବହି,
ତୋତାରେ କ୍ଷୀର ଯୋଗାଇବ ନିଅ ବାଟେ କହି ।''
ହରଷେ ମୋହନ ଗଲେ, ହେଲା ବନ ପାଶ;
ଡାକଇ ''ଗୋପାଳ ଭାଇ ! ଆସ, ବେଗେ ଆସ ।''
ଆସିଲେ ଗୋପାଳ ଭାଇ, ହାତେ କ୍ଷୀର ତାଳ
ଭାଇ ହାତେ କ୍ଷୀର ଦେଇ, ଲୁଚନ୍ତି ଚଞ୍ଚଳ ।
ହାତେ କ୍ଷୀରତାଳ ଗଲେ ଫୁଲାଇଣ ଛାତି,
ମିଳିଲା ପାଠଶାଳାରେ ମୋହନ ଝଟତି ।
ଶ୍ରାଦ୍ଧଦ୍ରବ୍ୟ ଯୋଗାଡ଼ରେ ଲଗିଛନ୍ତି ଗୁରୁ,
ଜିନଷ ରଖନ୍ତି ପୁଚ୍ଛି ପ୍ରତି ଛାତ୍ରଠାରୁ ।
ମୋହନ ଦେଖାଇ କହେ, ''ନିଅ କ୍ଷୀରତାଳ ।''
ସାମାନ୍ୟ କ୍ଷୀରରେ କାର ନ ହେଲା ଆଦର ।
କହି କହି ଶେଷେ ଉଚ୍ଚେ କାନ୍ଦଇ ମୋହନ,
''ବଳକଟେ ଆଣିଛୁ କ୍ଷୀର, ଦେଖ ତା ଗୁମାନ !''
କହନ୍ତି ଶିକ୍ଷକ, ''ନିଅ, ରଖିଦିଅ ଆଗ,
ତୁର ଭିକାରୁଣୀ ପୁଅ, କାଢ଼ୁଛୁ ସୁଆଗ !''
କାଢ଼ିଲା ମୋହନ ଅପ- ମାନେ ଲୁହ ଝରେ,
ତାଳରୁ ଢାଳନ୍ତି ତେଣେ କ୍ଷୀର ନାହିଁ ସରେ ।
ପୂରିଲା ବାଲଟି ଗରା ହଣ୍ଡା ହାଣ୍ଡି ଯେତେ,
କ୍ଷୀର ତ ନ ସରେ ତଳେ, ଅଛି ଯେତେ ସେତେ !

ଗାଆଁ ଗଣ୍ଡା ବୃରଆଡ଼ୁ ଆସି ଜୁଣ୍ଡ ଲୋକେ;
ଅଦ୍ଭୁତ ଏସ କ୍ଷୀର ଦେଖି ପରଖନ୍ତି ଥୋକେ।
ପ୍ରଭୁଙ୍କ ହାତର କ୍ଷୀର ଅକ୍ଷୟ ହୋଇଲା,
କହନ୍ତି, 'ଅଦ୍ଭୁତ ଏ ଯେ ଆଖି ନ ଦେଖିଲା !'
କ୍ଷୀରେ ଖିରପିଠା ହେଲା, ସର ରସାବଳୀ,
ରାବେଡ଼ି, ଖିରମୋହନ, ଲଡ଼୍ଡୁ, ସରପୁଳି।
ଖିରପିଠା ଥୁଆ ହେଲା, ଘର ଘର ପୂରି;
ମହକ ତା ଚହଟିଲା ମୁଗ୍‌ଧ ନରନାରୀ।
ଶ୍ରାଦ୍ଧପତ୍ରେ ବଢ଼ାହେଲା ଯେତେ ପିଠାଖିରୀ,
ତା ଦ୍ରବ୍ୟ ସୁବାସେ ଶ୍ରାଦ୍ଧ- ଘର ଗଲା ପୂରି।
ପିଣ୍ଡ ଧରି ପିତୃଲୋକେ ଡାକନ୍ତି ଶିକ୍ଷକ,
ସନ୍ଦେହେ ଘେନନ୍ତି ପିଣ୍ଡ, ଦେଖୁଛନ୍ତି ଲୋକ।
'ତୃପ୍ତ', 'ତୃପ୍ତ' କହି ପିତୃ- ଗଣ ଗଲେ ଫେରି,
ବ୍ରାହ୍ମଣ ପଙ୍‌ଗତ ବସେ ଲାଗେ ଦ୍ରବ୍ୟ କ୍ଷୀରି
କ୍ଷୀର ନୁହେ ସରଗର ଅମୃତ ସେ ଅବା !
ସହସ୍ର ସହସ୍ର ଭୁଣ୍ଡେ 'ବାହାବା ! ବାହାବା !'
ଶେଷରେ ବସନ୍ତି ଗୁରୁ ଛାଇ ଧାଡ଼ି ଧରି,
ପଢ଼ଇ ସକଳ ପ୍ରାଣ ଆନନ୍ଦେ ଉଚ୍ଛୁଳି।
ଖିରପିଠା ଖାଇ ଲୋକେ ଗଲେ ଯେଝା ଘରେ;
ମୋହନକୁ ଡାକି ଗୁରୁ ପୁଚ୍ଛନ୍ତି ଆଦରେ।
ଗୁରୁ—କାହୁଁ ପାଇଲୁ ଏ କ୍ଷୀର କହ ତ ମୋହନ !
ତୋର କ୍ଷୀର ଘେନି ଆଜ ଶ୍ରାଦ୍ଧ ମୋର ଧନ୍ୟ !
ମୋହନ—ଡାକିଲି, ଗୋପାଳ ଭାଇ ଆଣିଦେଲେ କ୍ଷୀର;
ସେ ତ ମୋର ବଡ଼ଭାଇ, ବାଟେ ସାଥୀ ମୋର।

ବଣବାଟେ ଅନ୍ଧକାରେ ଭୟ ହେଲେ ମୋତେ;
ହାତ ଧରି ଚଳାନ୍ତି ସେ, ଡାକଦେଲେ ଥରେ ।
ଗୁରୁ—ରହ ତେବେ ବାବୁ ! ତୋର ସଙ୍ଗେ ଯିବି ମୁହିଁ,
ଦେଖାଇଦେବୁ କି ବାରେ ତୋ ଗୋପାଳ ଭାଇ ?
ମୋହନ—ଆସନ୍ତୁ ନା ଗୁରୁଦେବ ! ଦେଖିବେ ତ ଯାଇ,
ଡାକିବି 'ଗୋପାଳ ଭାଇ', ଆସିବେ ସେ ଧାଇ
ବଣର ନିକଟେ ହେଲେ, ଡାକିଲା ମୋହନ;
ଉଚ୍ଚସ୍ୱରେ ତାନ ତୋଳି ଡାକେ ଘନ ଘନ ।
ଆଜି କି ବିଚିତ୍ର କଥା, ତା ଗୋପାଳ ଭାଇଁ,
ଯେତେ ଡାକିଲେ ହେଁ କିଆଁ ପାଖେ ପଶୁନାହିଁ !
"କିଆଁ ଡାକୁଅଛୁ ?" ଶୁଭେ, "ଆଜି ନାହୁଁ ଏକା,
ଗୁରୁ ଯାଉଛନ୍ତି ସଙ୍ଗେ, ନାହିଁ ଭୟ, ଦେକା ।"
ମୋହନ ଆତୁରେ କହେ, "ଗୁରୁଜି ତୁମକୁ
ଦେଖିବେ କହନ୍ତି ବେଗେ ଦେଖାଦିଅ ତାଙ୍କୁ ।"
ବନସାରା ଖେଳେ ଜ୍ୟୋତି ଶ୍ୟାମଳବରଣ,
ଆସିଲେ ଗୋପାଳ ଭାଇ ଦେଖିଲା ମୋହନ ।
ମୋହନ—ଦେଖନ୍ତୁ ହେ ଗୁରୁଦେବ ! ଭାଇ କି ସୁନ୍ଦର !
ଶିରରେ ମୟୂରଚୂଳ, ଗଳେ ରତ୍ନମାଳ,
ବାହୁରେ ବଳୟ ବେନି, ପାଦରେ ନୂପୁର,
ହସ୍ତେ ଶୋହେ ବଂଶୀ, କଟିତଟେ ପୀତାମ୍ବର !
ଗୁରୁ—ଦିଶୁନାହିଁ ମୋତେ କିଛି, ଖାଲି ଶ୍ୟାମଜ୍ୟୋତି !
ମୋହନ—ମୋ ଭଣ ! ଗୁରୁଙ୍କୁ ଭାଇ ! ଦେଖାଅ ମୂରତି ।
ଗୋପାଳ—ତୋ କଥା ସ୍ୱତନ୍ତ୍ର ବାବୁ ! ବିଶ୍ୱାସ ସରଳ,
ଅନ୍ତର ତ ଶୁଦ୍ଧଭାବେ, ପ୍ରେମେ ଢଳଢଳ;

ତୁ ଦେଖିଲୁ ବୋଲି ଗୁରୁ  ଦେଖନ୍ତେ କି ସତେ !
ତୋ ଯୋଗୁଁ ଦେଖିଲେ ଜ୍ୟୋତି, ଗଲା ପାପ ଯେତେ ।
ପ୍ରେମେ ବିହ୍ୱଳିତ ଗୁରୁ  ଦେଖି ଦିବ୍ୟ-ଜ୍ୟୋତି;
ମଧୁ ଦିବ୍ୟବାଣୀ ଶୁଣି  ଧନ୍ୟ କଲେ ଶ୍ରୁତି ।
ମୋହନ ଚରଣ କିନ୍ତୁ  ଅତି ହିଁ ଆତୁର,
ଦେଖି ନ ପାରିଲେ ଗୁରୁ  ହରିଙ୍କୁ ତାହାର ।
ଶିଷ୍ୟ ହସ୍ତ ଧରି ଗୁରୁ  ମିଳିଲେ ମନ୍ଦିରେ
ଶିଷ୍ୟହସ୍ତୁ କି ବିଦ୍ୟୁତ  ଅଙ୍ଗେ ଅଙ୍ଗେ ଖେଳେ !
ମନ୍ଦିରେ, ବାହାରେ ଏବେ  ଘନଶ୍ୟାମ-ଜ୍ୟୋତି !
ଅନ୍ଧବର ହୋଇ ଗୁରୁ  ଭିତରେ ଦେଖନ୍ତି;
ଦେଖିଲେ ଜ୍ୟୋତିମଣ୍ଡଳେ  ବିଧବାର କୋଳେ
ଗୋପାଳ ପୋଛନ୍ତି, ମାଆ-  ଲୁହ କୁତୂହଲେ !
ଦେଖି ଗୁରୁ ଚକ୍ଷୁ ଫେଡ଼ି  ଅପରୂପ ଛବି;
ଗୁରୁ ଶିଷ୍ୟ ବଡ଼ କିଏ  କହିବ କି ଭବି ?
ଭିକାରୁଣୀ ଗଣ୍ଠିଧନ  ଦେଖିଲ ତ ଗୁରୁ !
"ମୋର ଭିକାରୁଣୀ ପୁଅ !"  ମୁଖୁଁ ନ ବାହାରୁ ।

× × ×

ଜୟ ଜୟ ଗୋପୀନାଥ,  ଜୟ ନନ୍ଦବାଳ !
ଆଜିକି ନ ଦିଶେ ପଥ,  ହୁଏ ମୁଁ ବାଉଳ ।
ଅନ୍ତରେ ଘୋର ଅନ୍ଧାର,  ଦିବ୍ୟ-ଜ୍ୟୋତି ଜାଳି
ଦେଖାଅ ସୁଗମ ପଥ  ହୃଳ ବନମାଳୀ !
ସୁତସୁତା ଦେଲୁ କାହିଁ  ନ ଦେଖଇ ସୁଖ !
କୋଳେ ଆସ ନନ୍ଦସୁନୁ  ଦେଖେ ଚନ୍ଦ୍ରମୁଖ !

———

# ମାରଣାର ସାଯୁଜ୍ୟ ମୁକ୍ତ

ଶୁଦ୍ଧ ବଇଶାଖ ମାସ ଶୁକ୍ଲପକ୍ଷ ରାତ୍ତି
ସେ ତ ଧନକର ଘର ବିପୁଳ ସମ୍ପତ୍ତି ।
ଦାଣ୍ଡେ ସୁପ୍ରଶସ୍ତ ବେଢ଼ା ସୁରମ୍ଣ ମଣ୍ଡପ,
ହୁଏ ଭାଗବତ ପାଠ, ଜଳେ ସ୍ୱର୍ଣ୍ଣଦୀପ ।
ଗାଆନ୍ତି ମଧୁର କଣ୍ଠେ ପଣ୍ଡିତ ଉତ୍ତମ,
ଶୁଭୁଛି ସରସେ ଫୁଟି ରାମକୃଷ୍ଣ ନାମ ।
ପିଣ୍ଡା ଘର ପୂରି ଚଢ଼ି- ଛିଗେ ଜମା ଲୋକେ,
ମଣ୍ଡପରେ ବସିଛନ୍ତି ବଡ଼ ବଡ଼ ଥୋକେ ।
ହେଉଅଛି ପାଠ କୃଷ୍ଣ ଦିବ୍ୟ ବାଲଲୀଳା,
ଭାବର ଲହରୀ ପ୍ରାଣେ ପ୍ରାଣେ କରେ ଖେଳା ।
•ମାରଣା ପଶିଛି ଘରେ ଖୋଜେ ଅନ୍ଧ କନ୍ଧ,
ଯାର ସାର ଧନ ଦ୍ରବ୍ୟ ଥୋଉଅଛି ବାନ୍ଧ ।
ସୁମଧୁର କୃଷ୍ଣନାମ ବାଜେ କର୍ଣ୍ଣେ ତାର,
ଶୁଣିଲା ସେ ସ୍ଥିର ହୋଇ କିବା ସମାଚାର ।
ପଢ଼ାଅଛି ବାଲଲୀଳା, ପାହୁଅଛି ରାତି,
କୋଳରେ କହ୍ନାଇ ନନ୍ଦ ଗୋଧନ ଦୁହନ୍ତି ।
କଣ୍ଟକିତ ତନୁ, ନେତ୍ରୁ ବହେ ପ୍ରେମଧାର,
କୋଳେ କଇବଲ୍ୟଦାତା ପ୍ରାଣର ଦୁଲାଳ ।
ବାର ବାର ନିରେଖନ୍ତି ତନୟ ଶ୍ରୀମୁଖ
ବାର ବାର ଚୁମ୍ବ ଦ୍ୟନ୍ତି ତାଙ୍କ ଭାଗ୍ୟ ଦେଖ !
ସରିଲା ଗୋଧନ ଦୁହାଁ, ଦୁଗ୍ଧ ଘଟ ଧରି
ପୂନକୁଣ୍ଡେ ସଦ୍ୟ ଦୁଗ୍ଧ ନନ୍ଦ ଦେଲେ ଢାଳି ।

ଶୁଭିଲା ନୂପୁର ଧ୍ୱନି — ଆସିଗଲେ ଶ୍ୟାମ,
ପିଇଲେ ତାଙ୍କର ଭାଗ, — ନନ୍ଦ ପୂର୍ଣ୍ଣକାମ ।
ଭାଇ ଦୁଇ ଚଳିଯାନ୍ତି — ଯଶୋଦା-ମନ୍ଦିରେ
ନୀଳପୀତ କାଛା ଧରି — ମାତା ଉଭା ଦ୍ୱାରେ ।
ଟିଙ୍ଖାଇଲେ ଭଙ୍ଗା କାଛ, — ସଜାଡ଼ିଲେ ବେଣୀ,
ଖୋଞ୍ଜି ଦେଲେ ଶିଖିପୁଚ୍ଛ — ବିନ୍ୟାସିଣ କେଶ ।
ଚନ୍ଦ୍ରସ୍ଥ ଦୁଇ ମଣି ଦୁଇ — ଚୂଳେ ଖଞ୍ଜି ଦେଲେ;
ସଂସାର-ସମ୍ପଦ ସବୁ — ହେବ ନ ତା ତୁଲେ ।
ବକ୍ଷେ କଉସ୍ତୁଭମଣି, — ଗଳେ ରତ୍ନହାର,
ବାହୁରେ ବଳୟ ଦେଲେ, — ଚରଣେ ନୂପୁର ।
କେତେ କେତେ ଅଳଙ୍କାର — ନାହିଁ ତାର ମୂଲ
ଧରଣୀର ଧନ ଅଳ୍ପ, — ସରଗେ ଅତୁଳ ।
ବେଶ ବାନ୍ଧି ପ୍ରେମେ ମାତା — ଚୁମ୍ବନ୍ତି ବଦନ;
ସେ ଚୁମ୍ବନେ ସ୍ୱର୍ଗସୁଖ — ଦିଶିଲା ମଳିନ ।
ଛନ୍ଦଣି ବନ୍ଧଣି ବଂଶୀ — ହାତେ ଦୁଇ ଭାଇ,
ଚାଲିଲେ ଯମୁନାକୂଳେ — ଗୋଧନ ଚରାଇ ।
ତୋଳି ଫୁଲ ବନମାଳେ — ଶ୍ରୀଅଙ୍ଗ ଭରିବେ
କଦମ୍ବମୂଳରେ ରଙ୍ଗେ — ବଂଶୀ ବଜାଇବେ ।
ଶୁଣିଲା ମାରଣା, କବା — ଭାବନ୍ତୁଏ ଠିଆ,
ଭାବିଲା, "ଏ ଚେଷ୍ଟ ଚୋର — କରିବ ମୁଁ କିଆଁ ?
ଦୁଇ ବାଳକଙ୍କ ପିନ୍ଧା- — ଧରି ଯିବ ବନେ,
ହରିବ ଭୂଷଣ, ହେବ — ଆଢ୍ୟ ଧନୀ ଜନେ ।"
ଚୋରର ମାଲ ଘୁଡ଼ ଦାଣ୍ଡେ — ଆସିଲା ମାରଣା
ପଣ୍ଡିତେ ପଚାର ଭଲେ — ବୁଝିବ ଘଟଣା ।

ପଣ୍ଡିତେ ଫେରନ୍ତ ଘରେ ହୋଇ ଅଧରାତ,
ଦୁଆରେ ଦେଖନ୍ତ ଖାମ ମାରଣା ମୂରତ ।
"ଗୋସାଇଁ ! କହିଲୁ ତୁ ତ" ପୁଚ୍ଛଇ ମାରଣା,
"ନନ୍ଦପିଲ୍ଲ ରାମ କୃଷ୍ଣ ଅଲଙ୍କାର ନାନା,
କୋଟି କୋଟି ଟଙ୍କା ହେବ ଆଛା ଆଛା ମାଲ,
ସଂସାରରେ ନାହିଁ ସର ସରଗେ ଅତୁଳ ।
ଚୋରି କରୁଥିଲି ଘରେ ବାଜିଲା ମୋ କାନେ,
ଥରକରେ କେତେ ଧନ ! ଭାବେ ମନେ ମନେ,
ମୁଁ କାହିଁ କରିବ ଚୋରି ପଶି ଘରେ ଘରେ,
ଜୀବନକୁ ସୁଖୀ ହେବ ଚୋରି କରି ଥରେ ।
ମାରଣା ମୁଁ, ଡର ନାହିଁ ପଡ଼ିଗଲେ ବାଗ
ଲୁଟିବ ସେ ଅଲଙ୍କାର, ବତାଅ ତ ଆଗ ।
ଠିକ୍ କଥା କହୁଛ ତ, ଦେଖ ମୁଁ ମାରଣା,
ଦେଖ ମୋର ଠେଙ୍ଗା ମୁଣ୍ଡ କରିଦେବ ଚୂନା ।
ଥରକରେ ଯେବେ ଏତେ ବଭବ ମିଳିବ,
ଅଧେ ଅଧେ ନେବା, ମୋର ବାହୁଟେ କି ହେବ ?
ନାହିଁ ବାଲବଚ୍ଚା, ନାରୀ ନାହିଁ ଧନେ ସଧ,
ପୋଡ଼ା ପେଟ ପାଇଁ ସବୁ ଲାଗିଅଛି ଯୁଦ୍ଧ ।
ସତ ସତ କହ ତେବେ, ମୁହିଁ ତ ମାରଣା,
କେତେ ଦୂରେ, କେଉଁ ବାଟେ, କହ ତ ଠିକଣା ।
"କଳା ଧଳା ଦୁଇ ଭାଇ ଖରେ ଶିଖିଚୂଳ,
ଗୋଗୋଷ୍ଠ ଫେରନ୍ତ ଘରେ ବୁଡ଼ିଗଲେ ବେଳ ।
ବନମାଳେ ମଣ୍ଡିଥାନ୍ତ ସମସ୍ତ ଶରୀର,
ବୁଝିଆ ସେ, ନୋହିଲେ ତ ଲୁଟି ନେବେ ଚୋର !

ମୁରଲୀ ବଜାନ୍ତି ନିତି      ନାଚି ମାଠମୂଳେ,
ମାରଣା ଧରିବେ ପିଲ୍ଲୁ      ନ ଭାବନ୍ତି ତିଳେ ?"
"ଥାଅ, ଥାଅ ପଣ୍ଡିତ ହେ !      ମୋ ମନ ଉଚ୍ଛନ୍ନ;
ମାରଣା ତ ପିଲ୍ଲୁ ଧରି      ଲୁଟି ବେଣି ଧନ !
ଗୋଟି ଗୋଟି କରି ଆଜ୍ଞା,      କହ ଆଉ ଥରେ,
କଏ କେଉଁ ଅଳଙ୍କାର      କେଉଁ ଅଙ୍ଗେ ଭରେ ।"
ମାରଣାର ମୂର୍ଖପଣ      ଦେଖି ଦ୍ୱିଜ ହସେ,
ଘରୁ ପୋଥି ଆଣି      ହସି ହସି ପଢ଼ି ବସେ ।
କହେ "ପୋଥି କଥା ମିଛ      ହେବ କି ମାରଣା !
ତପନ ପଡ଼ିବେ ଖସି,      ଧରା ହେବ ଚୂନା !
ରାମ କୃଷ୍ଣ ବେନଙ୍କର      ଚରଣ କମଳେ
ସୁନାର ନୂପୁର ରୁଣୁ      ଝୁଣୁ ଧ୍ୱନି କରେ ।
କଟିରେ ସୁବର୍ଣ୍ଣ ସୂତା      ମାଣିକ୍ୟଜଡ଼ିତ
ବଚେଶ କୌସ୍ତୁଭମଣି      ବକ୍ଷେ ବିମଣ୍ଡିତ ।
ବାହୁରେ ରତ୍ନକଙ୍କଣ,      କର୍ଣ୍ଣରେ କୁଣ୍ଡଳ,
ଜ୍ୟୋତିରେ ମାନସ ହରେ,      ଗଳେ ରତ୍ନମାଳ ।
ଯାର ଯାର ମଣିଖଞ୍ଜା      ଚୂଡ଼ା ଶୋଭା କିବା ?
ମାଳ ଘନେ ତାରାପନ୍ତି      ମନେ ହୁଏ ଅବା !
କୁଞ୍ଚିତ ଅଳକପନ୍ତି      କସ୍ତୁରୀ ତିଳକ,
ମୁଖେ ମନ୍ଦହାସ, ମୋହେ      ଚହାଣି ଛଟକ ।
କୃଷ୍ଣର ହାତର ସେ ଯେ      ସୁବର୍ଣ୍ଣ ବାଂଶରୀ
ମୂଲ୍ୟ ତାର କେ କହିବ,      ନାଦେ ସୁଧା ଝରି ।
ମାରଣା—ହଉ ହଉ, ଆଉ କଥା;      ପୁଚ୍ଛେ ପଦ ଦୁଇ,
କେତେ ଦୂରେ, କେଉଁ      ଥାନେ ଭେଟିବି ମୁଁ ଯାଇଁ ?

ପଣ୍ଡିତ—"ଉତ୍ତର ଦିଗକୁ ଯାଅ, ଦେଖିବ ତ ସ୍ଥାନ,
ବହଇ ଯମୁନା ନଈ, ଗିରି ଗୋବର୍ଦ୍ଧନ ।
ନଦୀକୂଳ ନୀପମୂଳେ ମିଳି ଦୁଇ ଭାଇ,
ସରସେ ନାଚନ୍ତି ରଙ୍ଗେ ମୁରଲୀ ବଜାଇ ।
କୁଞ୍ଜ ଗିରି ପାଦ ଯାଏ ଶୋଭଇ ପ୍ରାନ୍ତର,
ଚରଣ ଶୁଣନ୍ତି ଗାଈ ମୁରଲୀ ମଧୁର ।"
ଆଉ ଥାଉ ଯାଏ ମୁହିଁ କହୁଣ ମାରଣା,
ଅନ୍ଧାରେ ଉତ୍ତରେ ଧାଏଁ, ନାହିଁ ପଥ ଜଣା ।
ଭୋକଶୋଷ ନାହିଁ, ଆଗେ ଆଗେ ଯାଏ ଚଳି,
ପାଦରେ କଣ୍ଟକ ଫୁଟେ, ବହେ ଶ୍ରମବାରି ।
ଅନ୍ତରେ ନାଚନ୍ତି ଦୁଇ ସୁନ୍ଦର ବାଳକ,
ଏକ ଘନଶ୍ୟାମ ତନୁ, ଗଉର ଆରେକ ।
କେତେ ଗାଆଁ ଗଣ୍ଡା ଗଲି, ପାହାଡ଼ ପଡ଼ିଲା,
ପାହାଡ଼ ପାଖରେ ସେ ତ ନଦୀ ନ ଦେଖିଲି ।
ଗୁଲେ ଅପନ୍ତରା ବାଟ, ଉଡ଼େ ବାଆ ଭଳି,
କେତେ ଯେ ବୁଲିଲି କିଏ ପାରିବ ତା କଳି ?
ଡାକଲେ ନଶି ଉଗରା, କୁଆ କଲେ କାଆ,
ଜାଣିଲି ମାରଣା ଆସି ହେଲି ପାହାନ୍ତିଆ ।
ପଶ୍ଚିମ ଗଗନ ଦିଶେ ଆରକ୍ତ ସୁନ୍ଦର,
ସମ୍ମୁଖେ ଦେଖଇ ଦୃଶ୍ୟ ଗିରି ମନୋହର ।
ନିକଟେ ଦିଶିଲି ନଈ ଯାଉଅଛି ବହି,
ଖୋଜିଲି କେଳିକଦମ୍ବ ରହିଅଛି କାହିଁ ?
ଦି ଗୁଚ୍ଛ କଦମ୍ବଗଛ ଯୋଗକୁ ଦେଖିଲି ।
'ଏଇ ହେବ' 'ଏଇ ହେବ' ମନେ ଠିକ୍ କଲି ।

ନଦୀକୂଳ୍କୁ ଗୋଚରାଳ ଯାଏ ପ୍ରସାରିତ
ରହିଛି ପ୍ରାନ୍ତର ଶ୍ୟାମ ଦୂର୍ବାଦଳଯୁକ୍ତ ।
ଦେଖିଲି ଗୋଚରଭୂମି ତୃପ୍ତ ହେଲି ମନେ,
ଗଛଚୂଳେ ଚଢ଼ି ଦୂରେ ଖୁଣ୍ଟିଲି ଯତନେ ।
କାହାନ୍ତି ଶ୍ରୀକୃଷ୍ଣ, କାହି ଶ୍ୟାମଘନ ଦ୍ୟୁତି,
ଆସନ୍ତି କି ବଳରାମ ଗଉର ମୂରତି ?
ରାତି ହେଲି ସାତ ରାତି ସରୁ ନାହିଁ କାଳ !
ପିକ କାକ ରବ ଦେଲେ, ନୁହଇ ସକାଳ ।
କଦମ୍ବଚୂଳରେ ଚଢ଼ି ଖୁଜେଁ ରଜଦାଗ,
ମନ ତ ଧୂରଇ, ପ୍ରାଣେ ଅପାର ଆବେଗ ।
ବାରେ ସେହୁ କାନପାତି, ବାଜେ କି ମୁରୁଲି,
କଳା ଧଳା ଦୁଇ ଭାଇ ଆସନ୍ତି କି ଚୂଲି ?
ଅଦ୍ଭୁତ ସାଧନା ଚୂଲି ହିତ ହେଲି ଶେଷ,
କି ଘଟେ ନାଚଇ ପ୍ରାଣେ ସରଳ ବିଶ୍ୱାସ !
ଫସର ଫାଁଟିଲି ଏବେ, ରାତି ଗଲି ପାହି,
ମାରଣା ବ୍ୟାକୁଳ ପ୍ରାଣେ ତିଳେ ଶାନ୍ତ ନାହିଁ ।
ବୃକ୍ଷଚୂଳ୍କୁ ଆସେ ତଳେ, ପୁଣି ଚଢ଼େ ଚୂଳେ
ବାରେ ଦୂରେ ବଂଶୀ ସ୍ୱନ ଜୀବନ ବିକଳେ ।
ଶୁଭିଲି କି ଦୂରେ, ବହୁ ଦୂରେ ବଂଶୀସ୍ୱନ !
ଚୂଳରୁ ଡେଇଁଲି ତଳେ, ଭୁଲିଲି ମରଣ ।
ପଡ଼ିଣ ମୂର୍ଚ୍ଛିତ ହେଲି, ହୋଇଗଲି ଜଡ଼,
ନିକଟେ ଶୁଣିଲି ସ୍ୱନ, ଉଠେ ଘୁଡ଼ୁ ରଡ଼ ।
ଦିଶିଲି ଶୀତଳ ଜ୍ୟୋତି ଶ୍ୟାମଳ ପ୍ରକାଶ,
ଜଗତମୋହନ ଦୁଇ ଭାଇ ହେଲେ ପାଶ ।

ଗୋଷ୍ଠପଲ ଯାଉଛନ୍ତି ଦୂରୁଁ ଦୂରେ ଚଳି;
ମଧୁର ମୁରଲୀ ଶୁଣୁ- ଛନ୍ତି କର୍ଣ୍ଣ ଡେରି ।
ମାରଣା—ଆହା କି ଅପୂର୍ବ ରୂପ, ବୃନ୍ତ ବିମ୍ବାଧର,
ଚକ୍ଷୁଜ୍ୟୋତିରୁ ସ୍ରବୁଛି ଅମୃତ-ନିର୍ଝର !
ଚତୁର୍ଦ୍ଦିଗେ ଯାଏ ଖେଳି ଅଙ୍ଗର ଝଟକ,
ବହୁ ମୂଲ୍ୟ ବିଭୂଷଣ ଶୋହେ ଅଙ୍ଗସାକ ।
ଏତେ ସୁକୁମାର ଶିଶୁ 'ଛନ୍ତି କି ଜଗତେ !
ଗାଈ ଜଗି ବାପ ମାଏ ଗୁଡ଼ଲେ କେମନ୍ତେ ?
ଦ୍ରବେ ମୋ ମାରଣା-ଚିତ୍ତ, ପ୍ରେମେ କଣ୍ଟକିତ,
ଯେତେ ଦେଖିଲେ ହେଁ ଚକ୍ଷୁ ନୁହନ୍ତି ତୃପତ ।
ଲୁଟିବି ଗହଣା, ଧିକ୍ ନଲେ ମୁଁ ମରି,
ହାତ କହେ ନୁଆ ସଜ ହିଅନ୍ତି ମୁଁ ଭରି ।
ନ ଲୁଟିବି ଗହଣା ତ ଆସିଲି କିପାଇଁ ?
ଅଧେ ଦେବି ପଣ୍ଡିତଙ୍କୁ କହିଛି ତ ମୁହିଁ ।
ମାରଣା ମୁଁ ଶୋଭିଲି କି ଦସ୍ୟୁମାସୁ ପ୍ରାଣେ ?
ଲୁଟିବାକୁ ଆସିଅଛୁ, ଲୁଟିବି ଏ କ୍ଷଣେ ।
ଦୃଢ଼ମନେ ମାରଣା ଯେ ହୁଏ ଆଗୁସାର,
ପ୍ରେମ, ସ୍ୱେଦ, କମ୍ପ, ହେଲା ସାତ୍ତ୍ୱିକ ବିକାର ।
ଗୌରଶ୍ୟାମ ଦୁଇ ତନୁ ଦେଖେ ପ୍ରାଣଭରି,
ଦେଖୁ ଦେଖୁ ବୁଢ଼େ ଚେତା ଢଳେ ଯାଏ ପଡ଼ି ।
ପୁଣି ଉଠେ, ପ୍ରେମେ ନାଚେ, ଗୁଣ୍ଡେ ଘୋର ରଡ଼ି,
କହେ ଦୁଢ଼େ, ଦିଅ ସବୁ ଅଳଙ୍କାର କାଢ଼ି ।
ଶ୍ରୀକୃଷ୍ଣ କହନ୍ତି, 'ଆମ ଦ୍ରବ୍ୟ ଦେବୁ କିଆଁ ?'
ମାରଣା ଦେଖାଏ ଲଠି କହେ 'ହିଆଁ, ହିଆଁ' ।

ଶ୍ରୀକୃଷ୍ଣ—ଧରନ୍ତୁ ତ ଲଠି ଖଣ୍ଡେ ଆଉ କି ଦେଖିବ ?
ମାରଣା—ନ ଦେଲେ ଏଥିରେ ମୁଣ୍ଡ ଗୁଣ୍ଡାକରି ଦେବ ।
ଶ୍ରୀକୃଷ୍ଣ—ନାହିଁ, ନାହିଁ କେବେ ଅଳଙ୍କାର ନାହିଁ ଦେବୁ,
ଆମେ ଦୁଇ ଜଣ ଅଛୁ, ଜଣେ କି କରିବୁ ?
ମାରଣା—ମାଡ଼ିବସି ନିଜ ହାତେ ସବୁ ନେବ କାଢ଼ି,
ଦୁଇ ଭାଇ ଦେବ ମୁହିଁ, ନଈରେ ଫୋପାଡ଼ି ।
ଦୁଇ ଭାଇ—ବାପରେ ! ବାପରେ ! କିଏ ଅଛ ଆସ ଧାଇଁ !
ମୁଖ ବନ୍ଦ କରେ ଦସ୍ୟୁ ପ୍ରଭୁ ମୁଖ ଛୁଇଁ ।
ସେ ସ୍ପର୍ଶେ ମାରଣା ଦେହେ ଖେଳିଲା ବିଜୁଳି,
ଚେତା ବୁଡ଼ିଗଲା, ଭୂମି ତଳେ ପଡ଼େ ଢଳି ।
ଚେତା ପାଇ କହେ, "ତୁମେ କିଏ ଦୁଇ ଭାଇ ?
ଅଧିକ ସୁନ୍ଦର ଦିଶ, ଯେତେ ଦେଖେ ମୁହିଁ ।
ଦେଖୁଁ ଦେଖୁଁ ଚକ୍ଷୁରେ ତ ନ ପଡ଼େ ପଲକ,
ଅଙ୍ଗେ ଅଙ୍ଗେ ଖେଳିଯାଏ ମୋହନ ପୁଲକ !
କାହିବ କି, ଲୁହ ବହେ, କି ବଚନ କଥା !
ତୁମେ ତ ମନୁଷ୍ୟ ନୁହ, ନିଶ୍ଚୟ ଦେବତା !".
ଦୁଇ ଭାଇ—ନାହିଁ ତ ! ଦେବତା ନୋହୁ ଆମେ ଦୁଇ ଭାଇ,
ନନ୍ଦଙ୍କ କୁମର, ଜଗୁ ବୁଲି ବନେ ଗାଈ ।
ମାରଣା—ଆହା କି ମଧୁର ହସ ! କି ବାଙ୍କ ଚାହାଣି !
ଲୁଟି କେ ପାରିବ ଅଙ୍ଗୁ ଅଳଙ୍କାର ପୁଣି !
ଯାଅ, ଯାଅ, ଦୁଇ ଭାଇ ଗୋଧନ-ଚରାଅ,
ଦେଖୁଥିବ ନେତ୍ରଭରି, ନିତ ଆସୁଥାଅ ।
ଆଣ ତୁମ କୁନି ହାତ କରେ ମୁଁ ଚୁମ୍ବନ,
ଶିରେ ପଦ୍ମପାଦ ଥୁଅ, କର ବାବୁ ଧନ୍ୟ !

ଏଇ ଯେ କଦମ୍ବମୂଳେ ବରଚ କୁଟୀର,
ରହି ଦେଖୁଥିବ ନିତି ବଦନ କମଳ ।
ନିତି ଦେଖା ଦେବ ଆସି ଯଉଣ-ସଞ୍ଜାଳି
ନ ହେଲେ ଏ ପିଣ୍ଡ ଗୁଡ଼ି ସିବ ଜୀବ ଗୂଳି ।
କୃଷ୍ଣ—କର ତ ପ୍ରତିଜ୍ଞା, ଆଉ ନ ମାଣବ ଲୁଟି,
ଅଙ୍ଗର ଗହଣା ଆଉ ନେବ ନାହିଁ ଲୁଟି ।
ବାଳୁତ ପରାଣ ଆଉ ନାହିଁ ଡରାଇବ ;
ତେବେ ତ ଆସିବୁ ବନେ ନିତ ଦେଖା ଦେବ ।
ମାରଣା—ଥରେ ନୁହେ, ଶତ ଥର ପ୍ରତିଜ୍ଞା ମୋହର,
ତୁମକୁ କେ ମାଣବ ରେ ଲୋକ ଦୁନିଆର ?
ତୁମକୁ ମାଣବ କା'ର ଅଛିରେ ଶକତି ?
ରୂପ ଦେଖି ତରଳବେ, ବାଇ ହେବ ମତି ।
ଶ୍ରୀକୃଷ୍ଣ—ଏବେ ଯାଚ କଣ ଦେଉ, ନଅ ତ ଗହଣା,
ଲୁଟିନେବା ବ୍ୟବସାୟ, ଜାତିରେ ମାରଣା ।
ଆମର ତ ଅଛି ବହୁ, ପୂରଛି ଭଣ୍ଡାର;
ଗରବ ତୁ ନଅ, ନଅ, ଦୁଃଖ କର ଦୂର ।
ମାରଣା—ଗହଣା କ ହେବ ବାବୁ ! ପୂରଛି କାମନା,
ଶ୍ରୀଅଙ୍ଗ ମୁକୁଳା ହେବ, ବଳାଇ କହ ନା ।
ଦୁଇ ଭାଇ—ବନମାଳେ ଭରଅଛୁ, ଦୁଇ ଭାଇ ଦେହ,
ମୁକୁଳା ଦିଶିବୁ ନାହିଁ, ମିଛ କାହିଁ କହ ?
ଘରେ ନୂଆ ଅଳଙ୍କାର ମାଆ ଦେବେ ଭରି,
ଇଚ୍ଛା ଯେବେ ଆସ କାଲ ନେବ ଆଜ ପରି ।
ମାରଣା—ନିଶ୍ଚୟ ଆସିବ କାଲ, ଦେଖିବ ଶ୍ରୀମୁଖ,
ନିତ ନିତ ମୁଖ ଦେଖି ଭୁଲିଥିବ ଦୁଃଖ ।

ବଳାଇ କହିଲେ କୃଷ୍ଣ     ଭଙ୍ଗି ନ ପାରିଲ,
ଅଞ୍ଚଳପାଣ୍ଡି ଶ୍ରୀଅଙ୍ଗ     ଭୂଷଣ ଘେନିଲ ।
ଶ୍ରୀଅଙ୍ଗ ପାଲଟା     ଅଳଙ୍କାର ଶିରେ ଧରି,
ଏକଥେ ଭଟେ ପ୍ରାଣ ଥରେ,     ଦସ୍ୟୁ ଯାଏ ଫେରି ।
ପଣ୍ଡିତ ଦୁଆରେ ସବୁ     ଅଳଙ୍କାର ଥୋଇ,
କହେ, "ସବୁ ନିଅ ତୁମେ,     ମୋର ଲୋଡ଼ା ନାହିଁ ।
କଉସ୍ତୁଭମଣି ଆଉ     ଆଉ ଅଳଙ୍କାର
ଜ୍ୟୋତିରେ ଝଟକେ ଘର     ନ ରହେ ଅନ୍ଧାର ।
ପଣ୍ଡିତେ ବୁଝିଲେ ସବୁ     ଘଟଣା ତ ସତ,
ଧନ୍ୟ ମାରଣା ଜୀବନ,     ଧିକ ମୁଁ ପଣ୍ଡିତ !
କୃଷ୍ଣ ବନ୍ଧୁଙ୍କ ଲୀଳା     ପଶୁର ପଶୁର;
ଲୋମକଣ୍ଟକିତ, ଗଦ୍ଗଦ     ଝରେ ଅଶ୍ରୁବାରି ।
ଚରଣ ଧରି କହନ୍ତି,     କି ହେବ ଗହଣା ?
କାଳା ଧଳା ନନ୍ଦସୁତ     ତୁ ଦେଖାଉ କିନା ?
ଦସ୍ୟୁ କହେ, "ପଣ୍ଡିତ ହେ !     କି ତୋର ବତୁର,
ଶ୍ରେଷ୍ଠ ଜାତି ବ୍ରାହ୍ମଣ ତୁ     ଧରୁ ମୋ ଠାକୁର !
ସଙ୍ଗେ ଚାଲ, କଷ୍ଟେ     ଦେଖାଇବ ଦୁଇ ଭାଇ ।
ଫେରାଇ ପିନ୍ଧାଇ ଦେବା     ଗହଣା ଗୋସାଇଁ !
ଗହଣା ଆଣିଲ, ଅଙ୍ଗ     ଥିବ ତ ମୁକୁଳା;
ଯାଚି ଦେଲେ ସତେ, ଧନ     ଦେଖି ହେଲି ଭୋଳା ।
ଧନଲୋଭୀ ମାରଣା ମୁଁ,     ଧିକ ମୋ ଜୀବନ,
କଇବଲ୍ୟଦାତାଠାରୁ     ଲୁଟେ ତାଂ ଭୂଷଣ !
ଦସ୍ୟୁ ବିପ୍ର କୋଳାକୋଳି     ଧାଆନ୍ତି ଛୁଟନ୍ତି,
କଦମ୍ବମୂଳରେ ହେଲେ,     ନ ପାହୁଣୁ ରାତି ।

ପଣ୍ଡିତେ ଦେଖିଲେ, ଆଗେ   ରମ୍ୟ ଏକ ବନ,
ନାହିଁତ ଯମୁନା, ପାଖେ   ଗିରି ଗୋବର୍ଦ୍ଧନ !
ପୁଣ୍ୟ ବ୍ରଜଭୂମି ନୁହେ,   ନ ହେବ ତା ଛାୟା;
କାଙ୍ଗାଳେ କରନ୍ତ ପ୍ରଭୁ   ଆହା କେଡ଼େ ଦୟା !
ସତେ ମୁଁ ଦେଖିବ ନେତ୍ରେ   ନନ୍ଦଗୃହ ଯାଇ,
ସଫଳ ହେବ ଜୀବନ,   ଏତେ ଭାଗ୍ୟ କାହିଁ !
ସକାଳ ହେଲା, ମାରଣା   ଗଛଚୂଳେ ଚଢ଼ି,
ଶୁଣେ ବଂଶୀସ୍ୱନ ଦୂରେ   ଯାଉଛି ପ୍ରେମେ ରଢ଼ି ।
ଲୁଚିଯାଅ ପଣ୍ଡିତ ହୋ !   ବୃଷ ପଛେ ଏବେ;
ଅଜଣା ତୁମକୁ ଦେଖି,   କାଳେ ନ ଆସିବେ ।
ଦୂରୁଁ ପାଖେ ଆସି କ୍ରମେ   ଜ୍ୟୋତି ଗଲା ଖେଳି,
ଜ୍ୟୋତି ପରିସରେ ଦୁଇ   ମୂର୍ତ୍ତି ଶୋହେ ଉଜ୍ଜ୍ୱଳ ।
ବିମ୍ବାଧରେ ଫୁଟେ ହସ,   ବଙ୍କିମ ଚାହାଣୀ,
ବଂଶୀନାଦ ମୋହେ ପ୍ରାଣ,   କି ବଚନ ଠାଣି !
ଶ୍ରୀକୃଷ୍ଣ କହନ୍ତ, "ଦସ୍ୟୁ,   ନୂଆ ଅଳଙ୍କାର
ପିନ୍ଧିଛୁ, ଆଣିଛୁ ନିଅ   ଯେତେ ଇଚ୍ଛା ତୋର ।"
ଲାଜରେ ମାରଣା ପ୍ରଭୁ   ପାଦତଳେ ପଡ଼ି
ହସ୍ତରେ ଚରଣ ଧରେ,   ଦେଲା ନାହିଁ ଛାଡ଼ି ।
ମାରଣା—ଚୋର ମାରଣାର ବୁଦ୍ଧି   ସମ୍ପଦେ ଭୁଲିଲା,
ଶ୍ରୀଅଙ୍ଗ ମୁକୁଳା କରି   ଗହଣା ନେଇଲା ।
ଲାଜେ ଯାଏ ସତି, ତୁ ତ   କଇବଲ୍ୟ-ଦାତା !
ଆଉ ଦଣ୍ଡ ଦିଅନାହିଁ,   ରଖ ମୋର କଥା ।
ଦୁହିଙ୍କ ଗହଣା ଅଙ୍ଗେ   ଦିଏ ମୁଁ ପିନ୍ଧାଇ,
ପୂର୍ଣ୍ଣ ଅଙ୍ଗ ପ୍ରେମେ ଦେଖେ,   ନାହିଁ କର ନାହିଁ ।

କାନ୍ଧରୁ ଫିଟାଇ ଦସ୍ୟୁ ଚୁମ୍ବେ ଅଳଙ୍କାର,
ଗୋଟି ଗୋଟି ଖଞ୍ଜେ ଅଙ୍ଗେ, ମନେ ପଡ଼େ ତାର,
'ଆସ ହେ ପଣ୍ଡିତ' ! କହେ, ଖଞ୍ଜି ଅଳଂକାର,
ଜଣକରେ ସରୁନାହିଁ, ହେଉଛୁ ଉଚ୍ଛୁର ।'
ଶ୍ରୀକୃଷ୍ଣ କହନ୍ତି, "ଦସ୍ୟୁ କପଟ ତୁ କଲୁ ।
ତୋ ସଙ୍ଗେ ଅପର ଅଛି ଆମେ ନ ଜାଣିଲୁ !
ତୁ ସିନା ଧୂରୁଣା, ତୋର ଠାରେ ଆମ ଭାବ ;
ନୂଆ ସେ ପଣ୍ଡିତଠାରେ ପୂରିଛି ଗରବ ।
ଦେଖି କି ପାରିବ ମୋରେ, ପିନ୍ଧାଇବ ଭୂଷା,
ତାଠାରେ ଅଛି କି ଦସ୍ୟୁ ତୋହର ତପସ୍ୟା ?
ତୋର ହାତ ଧରି ଦେଖୁ, ପାରିବ ସେ ଦେଖି,
ଶ୍ରୀଅଙ୍ଗ ଛୁଇଁବ ଧାତା ଭଲେ ନାହିଁ ଲେଖି ।"
ଦସ୍ୟୁ ହାତ ଧରି ଦ୍ୱିଜ କାଟେ ଭବ ଡୋର
ଦେଖେ, ନଟବର ଦିବ୍ୟ ବେଶ ମନୋହର ।
ଦେଖଇ ନୟନେ ପୁଣି ଦସ୍ୟୁଭାଗ୍ୟ ଠେକ,
ପ୍ରଭୁଙ୍କୁ ମଣ୍ଡଇ ଜନେ ଅଳଙ୍କାର ଯାକ ।
ଦ୍ୱିଜ-ଦସ୍ୟୁ ଆତ୍ମହରା, ନାଚୁ ଢଳଢଳ
ପ୍ରେମୋନ୍ମାଦେ ପଡ଼ିଯାନ୍ତି ଧରଣୀରେ ଟଳି ।
ବ୍ରହ୍ମରନ୍ଧ୍ର ଫୁଟି ଦୁଇ ପ୍ରାଣ ଗଲ ଉଡ଼ି,
ଦୁଇ ଆତ୍ମା ଦୁଇ ଅଙ୍ଗେ ଶେଷେ ଗଲେ ଜଡ଼ି !

× × ×

ଜୟ କୈବଲ୍ୟଦାତା ପତିତପାବନ ।
ପତ୍ନୀ-ପୁତ୍ର ହତ୍ୟା କଥା ତୁମେ କି ନ ଜାଣ ?

ମାରଣାଠୁଁ ବଳି ମୋର ପାତକ ବହୁତ,
ଧୋଇ କି ପାରିବୁ କୃପା କରି ନନ୍ଦସୁତ !
ପାପିର ଗରିଷ୍ଠ ପାପ ନ କଲେ ଖଣ୍ଡନ,
ପତିତପାବନ-ବାନା ହେବ ଅକାରଣ ।



# କାୟା ବିନିମୟ

ଜୟ ଭକତବତ୍ସଳ, ଜୟ ଚକାଡୋଳା !
ଜୟ ପ୍ରେମମୟ ହରି, ଭକ୍ତ ଭାବେ ଭୋଳା ।
ଭବ ପାଇ ମହାଭାବେ ବୁଡ଼ାଅ ଜଗତ,
ଭକ୍ତ ସଙ୍ଗେ ରଚୁ ଖେଳା, କି ଯେ ଅଦଭୁତ !
ଭକତର ପ୍ରେମମୟ ବିଚିତ୍ର ଚରିତ,
ବର୍ଣ୍ଣିବାକୁ ଶକ୍ତ କାହିଁ ବାଣୀ ପରାହତ ।
ଶୁଣ ହେ ଭକତଜନ ଭାବେ ଭାବଖେଳା,
ପ୍ରେମେ ମହା ପ୍ରତିଦାନ ମହିମାର ଲୀଳା ।
ମହାରାଷ୍ଟ୍ର ଦେଶେ ପୂତ କୃଷ୍ଣାନଦୀ ତୀରେ,
କହାଡ଼ ନାମକ ଗ୍ରାମ ରାଜଇ ରୁଚିରେ ।
ଗ୍ରାମରେ ବ୍ରାହ୍ମଣ ରହେ ରଚି ଘରଦ୍ୱାର,
ପୁଅ ବୋହୂ ପତ୍ନୀ ଘେନି ତାର ପରିବାର ।
ବୋହୂଟିର ନାମ ସଖୁ ଭକତ ସୁଶୀଳା,
ନମ୍ର, ସେବାପରାୟଣା, ବିନୟୀ, ସରଳା ।
ଶାଶୁ ଶଶୁର ଦୁହିଙ୍କ କଦର୍ଯ୍ୟ ପ୍ରକୃତି,
କର୍କଶ, କୁଟିଳ, ଦୁଷ୍ଟ, ତହୁଁ ବଳି ପତି ।

ରାତ୍ରି ପହରରୁ ଉଠି ରାତ୍ରି ଅଧଯାଏଁ,
ସବୁ କର୍ମ ରତା, ସବେ ଶୋଇଲେ ସେ ଶୁଏ ।
ଖଟିବାରେ ତାର ସୁଖ, ସେବାର ମୂରତି,
ଯେତେ କଲେ, କଲୁ ବୋଲି କେହି ନ କହନ୍ତି ।
ଶାଶୁଙ୍କ ଗଞ୍ଜଣା, ଗାଳି, ବଚନ ନିଷ୍ଠୁର,
ସହି ସହି ସବୁ କଲା ଶରୀର ପଥର ।
ବାଧା ଗୋଇଠା ପ୍ରହାର ଶାଶୁଙ୍କର ଦାନ,
ବନ୍ଧୁଙ୍କ ସପ୍ତ ପୁରୁଷ କରବା ତର୍ପଣ ।
ମାରବେ ସହଇ, ସବୁ ଆଶୀର୍ବାଦ ମଣେ,
ଦୁଃଖ ମଣେ ସୁଖ ସବୁ କ୍ଷମା ପ୍ରୀତି ଗୁଣେ ।
ବନ୍ଧୁପଦେ ରତ ସଦା ଶାନ୍ତା, ପ୍ରେମଶୀଳା,
ଦୁଃଖ କଷ୍ଟ ଦେଖେ ପ୍ରଭୁ କୃପା, ପ୍ରେମଲୀଳା ।
ଶାଶୁ ଶ୍ୱଶୁରଙ୍କ ସେବା, ପତିରେ ଭକତି,
ଧର୍ମ ତାର, ଦୁଃଖ ତାର, ନାହିଁ ତ ତ୍ରୁପତି ।
ଶାଶୁ ଶଶୁର-ଦେବତା, ପତି ତାହୁଁ ବଳି,
ରଖନ୍ତୁ ସଦା ତୃପତ, ବନ୍ଧୁପାଦେ ଅଳି ।
କର୍ମ ତା ହାତରେ, ଫଳ ବନ୍ଧୁଙ୍କର ଦାନ,
କର୍ମକର ତୃପ୍ତ ରହେ, ନିଏ ବନ୍ଧୁ ନାମ ।
ପବନ ଚନ୍ଦ୍ରପୁର ବନ୍ଧୁ ତୀର୍ଥ ସ୍ଥାନ,
ରଥ ବଡ଼ ଏକାଦଶୀ ବଡ଼ ପର୍ବ ଦିନ ।
ଦୂର ଦୂରାନ୍ତରୁ ଆସି ଲକ୍ଷ ନରନାରୀ,
ପୂଜନ୍ତି ବିଠଲ ଦେବେ ପ୍ରେମ-ଅଶ୍ରୁ ଢାଳି ।
ଦିନେ ସବୁ ଯାଇ କୃଷ୍ଣା— ନଦୀ ଆଣି ବାରି,
ଦେଖିଲା ଦିଶନ୍ତି ଯାତ୍ରୀ ୨ ଧାଧାଡ଼ି ସରି ।

ଗାଆନ୍ତି ବନ୍ଧୁସଙ୍ଗୀତ ପ୍ରେମେ ଅଶ୍ରୁ ଝରେ,
ଉଠେ ସ୍ମୃତି ପ୍ରତିଧ୍ୱନି ରଙ୍ଗେ ନଦୀମାରେ !
ଭବମୟ ପ୍ରାଣ ତାର ନ ପାରେ ସମ୍ଭାଳି,
ସ୍ଥିର କଲା, "ଯିବ ନିଶ୍ଚେ ଯାତ୍ରୀ ଦଳେ ମିଳି,
କହିଲେ କେବେ କି ଶାଶୁ ଶ୍ୱଶୁର ଛାଡ଼ିବେ ?
କହନ୍ତି ପତିଙ୍କୁ ସେ ତ ତାଙ୍କ ପଛ ନେବେ ।"
ଏତେ ଭବ ସଖୀ ମିଳେ ସୁଖେ ଯାତ୍ରୀଦଳେ,
ବିଚ୍ଛେଦେ ଜଣାଏ ବାଳା, ପରାଣ ବିକଳେ ।
ପ୍ରତିବେଶୀ ନାରୀ ଆସି- ଥିଲେ ନୀର ନେଇ,
ଫେରି କହନ୍ତି ଶାଶୁଙ୍କୁ ଘଟଣା ବୁଝାଇ ।
ଶାଶୁ ତ ନାଗୁଣୀ ଶୁଣି ଗରଜେ ରାଗରେ,
'ମାରି ପିଟି ଆଣ ବେଗେ' କୁମରେ ତଆରେ ।
ମାରି ପିଟି ଆଣେ ପତି, ତରୁଣୀ ବିକଳ,
ବିଚ୍ଛେଦ ବିଚ୍ଛେଦ ଜପେ, ନେତ୍ରୁ ବହେ ନୀର ।
ତିନି ଜଣେ ମିଳିମିଶି କଥା କଲେ ସ୍ଥିର,
ସଖୀଙ୍କୁ ବାନ୍ଧି ରଖିବେ ଦିବସ ପନ୍ଦର ।
ପଣ୍ଡରପୁରରେ ମେଳା ଟୁଟିଲେ ଯେତେ ଦିନ,
ଶୁଖି ଶୁଖି ମରୁ ସଖୀ ନ କରୁ ଭୋଜନ !
ସୁକୁମାର ବାଳାତନୁ ବନ୍ଧନର ଭିଡ଼େ,
ଧୀରି ଧୀରି ହସ୍ତପଦୁଁ ରକତ ନିଗିଡ଼େ ।
ବନ୍ଧନରେ ପଡ଼ି ବାଳା କହଇ ବନ୍ଧୁରେ,
"ଏତିକି ମାଗୁଣି ନାଥ ! ଚରଣ-କମଳେ,
କମଳଚରଣ ବାରେ କରିଣ ଦର୍ଶନ,
ଯାଆନ୍ତା ଏ ଜ୍ୱାଳାମୟ ଅସାର ଜୀବନ ।

ଏତିକି ମାତର ଇଚ୍ଛା ତୁ ଯେ ଦୟାମୟ,
ପୂର୍ଣ୍ଣକର, ଶୁଣ ଡାକ, ସରଣ ଅଥୟ ।
ଏ ଶରୀର ଏ ସମ୍ପଦ ସବୁ ନାଥ ତୋର,
ଯାହା ଅଛୁ, ଯାହା ନାହିଁ କିଛୁ ନୁହେ ମୋର ।
ମାରୁଛୁ, ତାରୁଛୁ ନାଥ ! ସବୁ ତୋର ଖେଳା,
ତରିବାକୁ ତୋ ଚରଣ କରିଅଛୁ ଭେଳା ।
ଅଭୟ ଚରଣ ଧରି ନୁହେ ଯେବେ ପାର,
ତୋ ନାମେ କଳଙ୍କ ହେବ, ସହିବ କିପରି ?''
ଏ ଯେ ବିକଳ ପ୍ରାର୍ଥନା, ଭକ୍ତ ଆର୍ତ୍ତ ଡାକ
କମ୍ପାଇଲା ବଇକୁଣ୍ଠ, କମ୍ପଇ ତ୍ରିଲୋକ ।
ଉଠିଲେ ଆସନ ତେଜି ବଇକୁଣ୍ଠସାଇଁ,
ସୁନ୍ଦର ଅବଳା ବେଶେ ଆସିଲେ ସେ ଧାଇଁ ।
କହନ୍ତି, "ପଣ୍ଡରପୁର ଯାଉଛୁ ଭଉଣୀ,
ଆସିବୁ କି, ଇଚ୍ଛା ବଡ଼ ଯିବ ସଙ୍ଗେ ଘେନି ?''
ସଖୁ—ଅଭାଗିନୀ ଭଗିନୀ ମୁଁ, ନାହିଁ ଭାଗ୍ୟ ଲେଖା,
ବୈକୁଣ୍ଠନାଥ ବିଠ୍ଠଲ କାହୁଁ ଦେବେ ଦେଖା ?
ବଡ଼ ଇଚ୍ଛା ଥିଲା, ତେଣୁ ହେଲା ଏ ବନ୍ଧନ,
ଏ ମହା ସଙ୍କଟୁ ନାମା, ନାହିଁ ପରିତ୍ରାଣ ।
ନବାଗତା—ଉଦାସ, ନିଶ୍ଚେଷ୍ଟ ହେଲେ ହେବ କି ଭଗିନୀ ?
'ରହେ ମୁଁ ବନ୍ଧନେ ତୋର' ଘେନ ହରି ବାଣୀ ।
କହିଣ ଏସନ ବନ୍ଧୁ ଖୋଲିଲେ ବନ୍ଧନ,
ସଖୁକୁ କହିଲେ "ବାନ୍ଧ କରିଣ ଯତନ;
ଏଥି ରହେ ବନ୍ଦୀ ହୋଇ ମୁହିଁ ତୋ ବଦଳେ,
ଫିଟି ମୁଁ ପାରିବି ଯାଇ ମୋର ବୁଦ୍ଧି ବଳେ ।''

ଶ୍ରୀହସ୍ତ ପରଶେ ସଖୁ    ମହା ପ୍ରେମେ ଭୋଳା,
ବିଦ୍ୟୁତ ଖେଳିଲା ପ୍ରାଣେ    ସେ ତ ଆତ୍ମହରା !
ବାନ୍ଧିବାକୁ କାହିଁ ଶକ୍ତି    ବାନ୍ଧିବ କି ଆନେ,
ଖୋଲିଲା ଯେତୁ ବନ୍ଧନ    ଶାନ୍ତି ଦେଲା ପ୍ରାଣେ ।
ସଖୁକୁ ଦେଖିଣ ପ୍ରଭୁ    ଦ୍ୱୋଇଲେ ଅନ୍ତର,
କ୍ଷଣକେ ଥୋଇ ଆସିଲେ    ବିଠ୍‌ଠଲ ମନ୍ଦର :
ପ୍ରଭୁ ଆସି ସଖୁ ସ୍ଥାନେ    ପଡ଼ିଲେ ବନ୍ଧନେ,
ଲାଗିଗଲେ ପ୍ରେମମୟ    ଲୀଳା ବିରଚନେ ।
ନାରୁଣୀ ଶାଶୁ ଗରଜେ    ଦିଏ ଗାଳି ନିତି ,
ସୁଶୀଳା ବୋହୂଟି ପରି    ଶୁଣନ୍ତି ଶ୍ରୀପତି ।
ପଡି ଆସିଲେ ଆଖିରୁ    ପଡ଼େ ଅଶ୍ରୁ ଝରି,
କେ ବୁଝିବ ବିଭୁଲୀଳା    ଅଦ୍ଭୁତ ଚାତୁରୀ ?
ଦେଖି ଦେଖି ଚତୁର୍ଦ୍ଦଶ    ଦିନ ହେଲା ପାର,
ପଞ୍ଚଦଶ ଦିନ ପଡି    କରଇ ବିଚାର,
"ନ ଖାଇ ମରିଲେ    ପାପୁ ହେବଂକି ମୁକତ ?
ମୁହିଁ ପୁଣି ଧର୍ମପତି    ଧରିଛି ତା ହାତ ।"
ଅନ୍ତର ଧିକ୍କାରେ ଆସେ    ଘୋର ପଶ୍ଚାତ୍ତାପ,
କ୍ଷମା ଭିକ୍ଷାକରେ ଯାଇଁ    ପତ୍ନୀର ସମୀପ ।
ବନ୍ଧନମୋଚନ କରି    କହେ ମିଠୁ ବାଣୀ,
ସ୍ନାନ ପାନ କରାଇଲା    ତୋଷିଣ ରମଣୀ ।
ଶୂଚିଭୂଷି ପତ୍ନୀ ପରି    ପ୍ରଭୁ ନାରାୟଣ,
ରାନ୍ଧିବାରେ ଲାଗିଗଲେ    ବିବିଧ ବ୍ୟଞ୍ଜନ ।
ରାନ୍ଧି ବାଢ଼ି ଡାକ ଖୁଆ-    ଇଲେ ତିନି ଜଣ,
ସ୍ୱାଦ ଚାଖି ପ୍ରଶଂସନ୍ତି,    ସରବେ ପ୍ରସନ୍ନ ।

ପ୍ରଭୁହସ୍ତ ରନ୍ଧା ଖାଇ ନାଚଇ ଅନ୍ତର,
ବୋହୂର ଦଣ୍ଡଇ ସବୁ ଅତୁଳ୍ୟ, ସୁନ୍ଦର ।
ଅଙ୍ଗସ୍ପର୍ଶେ କେଲ୍କୁଁ ପତି ଅଛ ହୁଁ ଅଧୀର,
"କେଉଁ ପତ୍ନୀ ସଙ୍ଗେ କଲ କବା ବ୍ୟବହାର !"
ଧନ ଯାଇ ଶ୍ୱଶ୍ରୁ ଆସେ ପ୍ରଭୁ କରେ ସ୍ଥିର,
"ସଖୁ ନ ଆସି ଗମିଲେ ଶୁଭ ନାହିଁ ତାର ।
ଆଜ୍ଞା ଦେଇ ଶ୍ୱଶ୍ରୁ ଗଲେ, ଭକତର ଘର,
ଭକତର ହାତେ ଦେଇ ହୋଇବ ଅନ୍ତର ।"
ଶ୍ୱଶ୍ରୁ ରନ୍ଧାରେ ତ ଶାଶୁ ଯୋଗଦେଲେ ଆସି,
'ଅନ୍ନପୂର୍ଣ୍ଣା' ବୋଲି ବଧୂ ସମ୍ବୋଧିଲେ ହସି ।
ଶ୍ୱଶୁରଙ୍କର ତ ଦେବେ ସୁପ୍ରସନ୍ନ ମୁଖ,
କି ପ୍ରୀତି ଖେଳଇ ପୁରେ ଗଲା ଚିର ଦୁଃଖ ।
ଖାଇପିଇ ସାରି ଶାଶୁ ଶ୍ୱଶୁର ଶୋଇଲେ,
ଶଯ୍ୟା ସଜାଡ଼ିଲେ ପତି ଶୋଇବାକୁ ଗଲେ ।
ଶାସ୍ତ୍ର ପୁରାଣରେ କାହିଁ କେବେ ନାହିଁ ଶୁଣା,
ଭକ୍ତ ପାଇଁ ପ୍ରଭୁ କରେ ଶୟନ-ରଚନା ।
ଶୟନସଙ୍ଗ ମା ହେବେ କେଶ ବିରଚିଲେ
ନଖୁଁ ଶିଖଯାଏ ବଭୂ- ଷଣ ମଣ୍ଡି ହେଲେ ।
ଗୃହୁକେଶ ପ୍ରସାଧନେ ଅଙ୍ଗରାଗ ବାସେ
ମହକିଲା ଶଯ୍ୟାଗୃହ, ରୂପେ ପୁରି ହସେ ।
ପ୍ରଭୁ ଏ ମୋହିନୀ ବେଶ ଶିବ-ଧୃତିହରା,
ଥରେ ଦେଖି ତ୍ରିଭୁବନ ତରିଗଲା ପରା !
ଭକ୍ତର ତରିଲ ପ୍ରାଣେ ନାହିଁ ପ୍ରୟୋଜନ,
ସ୍ଥୂଳ ନଟବର ବେଶ ଦେଖୁ ଏ ନୟନ ।

ତ୍ରିଭଙ୍ଗ ଠାଣିରେ ଯୋଷା ବଙ୍କିମ ଗୃହାଣି,
ପ୍ରେମର ତରଙ୍ଗେ ଭରି ବାଜୁ ବଂଶୀବାଣୀ ।
ପତ୍ନୀ ଛୁଇଁଲେ ପଲଙ୍କ ଘଟେ ବିପର୍ଯ୍ୟୟ,
ପତି ପତ୍ନୀ ହେଲ, ପତ୍ନୀ ଧରେ ପୁଂସକାୟ !
ପତି ପତ୍ନୀ ପ୍ରେମେ ଖେଳା ସରି ଗଲ ପାହି,
କି ପ୍ରେମ-ପୀୟୂଷରସ ରଚ ବିଶ୍ୱସାଇଁ !
ରଜନୀ ପ୍ରଭାତେ ପ୍ରଭୁ ସଖୀ ବେଶ ଧରି,
ଲାଗିଗଲେ ଗୃହକର୍ମେ ପୁଣି ମାୟା ଭରି ।
ଖେଳନ୍ତି ପୀରତି ହସି ଉଠିଲା ମନ୍ଦିର,
ଗୃହି ପ୍ରାଣ ଏକ କଲ ପୀରତି ମଧୁର ।
ତେଣେ ସୁଖେ କରେ ସଖା ପ୍ରଭୁଙ୍କ ଦର୍ଶନ,
ଲକ୍ଷ ଯାତ୍ରୀମେଳେ ମହା ପ୍ରେମେ ନିମଗନ ।
ଅଙ୍ଗରେ ପୁଲକ ଖେଳେ, ପ୍ରେମେ ଅଶ୍ରୁ ଝରେ,
"ଏ ଦେହେ ନ ଯିବ ଘରେ" ପ୍ରତିଜ୍ଞା ସେ କରେ ।
"ଦିଅ ପ୍ରଭୁ ପାଦେ ସ୍ଥାନ ନିଅ ଏ ପରାଣି",
କହି କହି ପଡ଼େ ସଖୀ ବିଠଳ ଚରଣେ ।
ମହା ସମାଧିରେ ଲଗ୍ନ ନ ଉଠଇ ବାଳା,
'ଗଲ ଗଲ, ଯାଇ ପ୍ରାଣ ଶ୍ରୀଅଙ୍ଗେ ମିଶିଲ !'
ଉଠିଲା ଗହଳ, ଲୋକେ ଦେଖନ୍ତି ପରଖି,
କହନ୍ତି, 'ପିଣ୍ଡରେ ଆଉ ନାହିଁ ପ୍ରାଣପକ୍ଷୀ ।'
ଯୋଗକୁ କହାଡ଼ ପାଖ ମିଳିଲେ ବ୍ରାହ୍ମଣ,
ମହା ସମାରୋହେ ପିଣ୍ଡ କଲେକ ଦହନ ।
ରୁକ୍ମିଣୀ ଭାବନ୍ତି ମନେ "ଆଛା କୃତ୍ୟ ହେଲ !
ସଖୀ ସେ ତ ଭବମୟୀ ଭବ-ମୃତ୍ୟୁ ନେଲ ।

ସଖୁ ବେଶେ ବୋଦ୍ଧ ସାଜି, ଗଡ଼େ ପ୍ରଭୁ ଘରେ,
ପ୍ରଭୁଙ୍କ ଫେରିବା ପାଇଁ କରେ ମୁଁ ବିସ୍ତର ।"
ଏତେ ଭାବ ମହାମାୟୀ ଶ୍ମଶାନକୁ ଗଲେ,
ସଖୁ ଭସ୍ମ ଧରି ହସ୍ତେ ନବ ଜନ୍ମ ଦେଲେ ।
କହନ୍ତି "ବାମ୍ଭଣୀ, ଉଠ ଫେରିଯାଅ ଘର
'ଏ ଅଙ୍ଗରେ ନ ଫେରିବି' ସତ୍ୟ ଥିଲା ତୋର ।
ସେ ଅଙ୍ଗ ଯାଇଛୁ ପୋଡ଼ି, ଯାଅ ବେଗେ ଆଜି,
କେତେ କାଳ ପ୍ରଭୁ ଥିବେ ବୋଦ୍ଧ ବେଶ ସାଜି ?"
ସଖୁର ପଡ଼ିଲା ମନେ, "ନାଶିଏ ବନ୍ଧନ
କାହ୍ନୁଁ ଆସି ଫିଟାଇଲେ, ସେ ତ ଆର୍ତ୍ତତ୍ରାଣ !"
ପ୍ରେମେ ନାଚେ ପ୍ରାଣ ତାର ବେଗେ ଆସେ ଧାଇଁ,
ଷୋଡ଼ଶ ଦିନରେ ମିଳେ କୃଷ୍ଣାତଟେ ଯାଇଁ ।
ମାର ନେବେ ଅନ୍ତର୍ଯ୍ୟାମୀ, ଆସି ନଦୀକୂଳେ
ଥିଲେ, ଦେଖାଦେଲା ସଖୁ ଜଳପାତ୍ର ନେଲେ ।
ଭକ୍ତକୁ କୁଣ୍ଢାଇ ପ୍ରଭୁ ହୁଅନ୍ତି ଅନ୍ତର,
ବେନି ତନୁ କଣ୍ଟକିତ, ନେତ୍ରେ ଅଶ୍ରୁ-ଧାର ।
ସଖୁ ଆସି ଘରେ ହେଲା ସ୍ୱଗୃହ କର୍ମେ ରତ,
ଦେଖିଲା ଶ୍ମଶାନ-ସ୍ୱପ୍ନ ସ୍ୱର୍ଗେ ପରିଣତ !
ଆସିଣ ମିଳିଲେ ଗ୍ରାମ ପାଖ ଦ୍ୱିଜଗଣ,
ସଖୁକୁ ଶ୍ମଶାନେ ଯେହ୍ନ ଥିଲେକ ଦହନ ।
ବିସ୍ମୟେ କହିଲେ, "କାହ୍ନୁଁ ଭୂତ ଏକ ଆସି,
ଅବିକଳ ସଖୁ ବେଶେ ଘରେ ଅଛୁ ପଶି ।"
ପାଞ୍ଚଲୋକେ ଏକ କଥା, ଶୁଣି ଦ୍ୱିଜ ହସେ,
"ଭୂତ ନୁହେ ଅନ୍ନପୂର୍ଣ୍ଣା, ଥାଉ ସଖୁ ବେଶେ !"

ସଙ୍ଗୀ ନନ୍ଦେ କହେ ମୁଖେ    ନଭ ସମାଚାର,
ଧନ୍ୟ ଧନ୍ୟ କହି ଲୋକେ    ହୋଇଲେ ଅନ୍ତର ।
ଧନ୍ୟ ପୁଅ ବୋଲ୍ହୁ, ଧନ୍ୟ    ତୁମର ଜୀବନ,
ମରଦେହେ ଅଙ୍ଗେ ମିଶା-    ଇଲ ନାରାୟଣ !
ଧନ୍ୟ ହେଲେ ପିତା ମାତା    ପୁଅବୋଲ୍ହୁ ଯେଣ
ମିଳିଲେ ବୈକୁଣ୍ଠ ଧାମେ,    ତେଜିଣ ଅବନୀ !

× × ×

ଜୟ ଜୟ ଲୀଳାମୟ    ବିଶ୍ୱ ବିଧାତା !
ଜୟ ଜୟ ଭକ୍ତସଖା    କୈବଲ୍ୟଦାତା !
ତୋ ଭକ୍ତଚରଣ ରେଣୁ    ଧରୁ ଏ ମଉଳି,
ଭକ୍ତ ଯଶ ଗାଉଁ ଗାଉଁ    ପଡ଼ୁ ଶେଷେ ଟଳି ।

---

# ସିଂହ-ପୂଜା

ସୁପ୍ରସିଦ୍ଧ ମାନସିଂହ    ଅମ୍ବର ନୃପତି,
ଯାଇ ରାଜା ମାଧୋସିଂହ    ପତ୍ନୀ ରତ୍ନାବତୀ ।
ରତି ଜିଣି ରୂପ ତାର,    ରୂପୁଁ ବଳି ଗୁଣ,
ପବିତ୍ର ପ୍ରେମରେ ପୂଜେ    ପତିଙ୍କ ଚରଣ ।
ଶ୍ରଦ୍ଧା ପ୍ରୀତି ବଳେ ବଶ    ପୁରବାସୀ ଜନେ,
ଜନନୀଠୁଁ ବଳି ରାଣୀ,    ବିଚାରନ୍ତି ମନେ ।
ଏ ସଂସାର ଖେଳଘର    ସବୁ ବିଷ୍ଣୁଲୀଳା,
ଭକତି ପୀରତି ଧରି    ରଚନ୍ତି ସେ ଖେଳା ।
ରାଣୀଙ୍କର ଦାସୀ ଶୁଦ୍ଧ-    ପ୍ରାଣା ଭକ୍ତିମତୀ,
ଶ୍ୟାମସୁନ୍ଦରରେ ତାର    ପରମ ପୀରତି ।

ପ୍ରେମତରଙ୍ଗିତ ପ୍ରାଣ, ଗଣ୍ଡେ ଅଶ୍ରୁଧାରା,
କେବେ ନାଚେ, କେବେ ହସେ, କେବେ ଆତ୍ମହରା ।
ଘରେଝୋଲା ଉନ୍ମତ୍ତ ସେ ହୁଏ କ୍ଷଣ କ୍ଷଣ,
ମୁଖୁଁ ଶୁଭେ ବ୍ରଜଚନ୍ଦ୍ର ! ହେ ନନ୍ଦନନ୍ଦନ !
ସେ ନାମୁଁ ଅମୃତ କ୍ଷରେ ପୂରେ ଅନ୍ତପୁର,
ବେଳେ ବେଳେ ରାଣୀ ହେଲେ ପ୍ରେମରେ ଅଧୀର ।
ଦାସୀର ବ୍ୟାକୁଳ ଡାକ, କରୁଣ କ୍ରନ୍ଦନ
ଜଗାଇଦେଲା ଚେତନା, ଟାଣେ ରାଣୀ ମନ ।
ଦାସୀର କ୍ରନ୍ଦନେ କ୍ରମେ କାନ୍ଦେ ରତ୍ନାବତୀ,
ଅଙ୍ଗେ ଅଙ୍ଗ ଭଡ଼େ, ବୁଝେ ପରାଣ-ଆରତି ।
କ୍ରମେ ସେଠୁଁ ଆସେ ପ୍ରେମ, ପ୍ରୀତିରୁ ଭକତି;
ଦାସୀ ବଡ଼ ହେଲା, ଘେନେ ରାଣୀର ପ୍ରଣତି ।
ଗୁରୁ ସ୍ଥାନେ ବସି ଦାସୀ ରାଣୀକୁ ତଥାରେ,
ରାଣୀର ସ୍ନାତ୍ତ୍ୱିକ ପ୍ରାଣେ ବିନ୍ଦୁରସ ଢାଳେ ।
ବ୍ୟାକୁଳତା ବଢ଼େ, ରାଣୀ ଦାସୀକୁ ପଚାରେ,
କାହୁଁ ପାଇଲୁ ଏ ପ୍ରେମ ! ‐ ବତା ବତା ମୋରେ ।
କୃଷ୍ଣ ନାମେ ଏତେ ମଧୁ କାହୁଁ ଦେଉ ଭରି,
କି ମାଧୁର୍ଯ୍ୟ ଉଚ୍ଛୁସଇ ତୋ ଅନ୍ତର ପୂରି ?
ତୋ ମୁଖର ବ୍ରଜଚନ୍ଦ୍ର ! ହେ ନନ୍ଦନନ୍ଦନ !
କି ବିରହ ଜାଳେ ପ୍ରାଣେ ଛନ୍ନ ହୁଏ ମନ ?
ଭୁଲିଯାଏ ସଂସାର ଲୋ ! ପ୍ରେମ-ଅଶ୍ରୁ ଝରେ,
ନାଚିବୁ, ଗାଇବୁ ଘରେ, କି ଘରେ ଅଧୀରେ ?
କି ମାଧୁରୀ, କି ପ୍ରେମରେ ତୋ ଅନ୍ତର ଭରା,
ଦେଖାଇପାରିବୁନି କି ମୁଁ ତୋ ଶିଷ୍ୟା ପରା ?

ଶୁଣାଇପାରିବୁନି କି ମୁରଲୀ ମଧୁର,
ଦେଖାଇ ପାରିବୁନି କି ବାରେ ବଂଶୀଧର ?
ଦାସୀ କହେ, ରାଣୀ ଧରୁ କି ଦୁର୍ଗମ-ପଥ ?
କେତେ କେତେ ଧରି ହେଲେ ନାହିଁ ସମରଥ ।
ରାଜବେଶ ଛାଡ଼ି କେତେ ଗଡ଼ିଲେ ଧୂଳିରେ,
ପାଟ ପୀତାମ୍ବରୀ ଛାଡ଼ି କଉପୀନ ନେଲେ ।
ଖାଦ୍ୟ ପାନ ଭୁଲି ମହା ତପସ୍ୟା ମଗନ,
ସୁନା ଦେହ ଚୂନା କଲେ, ହାରିଲେ ଜୀବନ ।
ତେବେ ତ ପାରିଲେ ନାହିଁ କରିଲେ ! ଗୋଚର,
ସହଜ ନୁହେ ଗୋ ଧରି ଲେଉଡ଼ି ବଂଶୀଧର ।
ଗୋଟିଏ ଉପାୟ ଅଛି, ପଦେ ଶୁଦ୍ଧମନ୍ତ,
ପ୍ରେମ, ପ୍ରେମ, ମହାପ୍ରେମ, ସେହି ଏକା ଗନ୍ତ ।
ପାଗଳୀ ହୋଇଲେ ପ୍ରେମେ, ରାଣୀ ଦାସୀ ଭେଳା,
ବିଳାସ ଲୁଚିଲା, ଜାତି ସଂଯମ, ଶୃଙ୍ଖଳା ।
ସାଧନେ, ଭଜନେ ଦୁଇ ପ୍ରାଣଗଲା ମାତି,
କୃଷ୍ଣ ନାମେ ପ୍ରେମ, ସେଇ ଚରଣରେ ରତି ।
ସାଧୁସଙ୍ଗ ପାଇଁ ଦମେ ପରାଣ ଉଛନ୍ନ
ସାଧୁସଙ୍ଗ ବିନୁ ନୁହେ, ଚରଣ-ଦର୍ଶନ ।
ଦାସୀ କହେ, "ରାଣୀ ! ନୋହୁ ଯୋଗୀ ଋଷି ମୁନି,
ବାଇଫଳ ଖାଇ ତୁ ତ ହେଲୁ ପାଗଳୁଣୀ ।
ସମ୍ପଦର କୁଟିଳ ବସି ଧରିବାକୁ ମନ
କାଙ୍ଗାଳର ହରି, ଦରିଦ୍ରର ଭଗବାନ !
ଫିଙ୍ଗ ପୀତାମ୍ବରୀ, ଧର କାଙ୍ଗାଳର ଭେକ,
ବେଶ ଛାଡ଼ି ଧର ଦୈନ୍ୟ, ଲୁଚୁ ଗର୍ବ, ଟେକ ।

କୁଶାସନେ ଚର୍ମ ପାତି ବସ ତୁ ଆସନେ,
କାୟା ଶିର ସମ କରି ଶୁଦ୍ଧ ହୁଅ ମନେ ।
ନାସା ଅଗ୍ରେ, ଭ୍ରୂମଧ୍ୟରେ ମନ କର ସ୍ଥିର ,
ଧନମାନ ଚିନ୍ତା ଭୁଲି ପ୍ରଣବ ତୁ ଧର;
ଓଁକାର ମଧ୍ୟରେ ଚିନ୍ତ, ଯୁଗଳ ମୂରତି,
ତେବେ କାଳେ କୃପା ହେବ, ଦେଖୁ କିନା ଜ୍ୟୋତି ।
ଦିବ୍ୟ ଜ୍ୟୋତି ପରିସରେ ହେମ ପୁଣ୍ଡରୀକ,
କସ୍ତୁରୀ କେଶର ତାର ପତ୍ର ସହସ୍ରକ,
ସେହି ପୁଣ୍ଡ୍ରୀକ ପରେ ପ୍ରଭୁ ଆଦିମୂଳ,
ଦେଖି ଧନ୍ୟ ହେବୁ ରାଣୀ, କର୍ମ ଯେବେ ଭଲ ।
ଦୁର୍ଗମ କରମପଥ ରଖେ ଅହଂକାର,
କରମ ଅରପି ତାରେ, ପ୍ରେମେ ପଦ ଧର ।
ଯୁଗଳଚରଣେ ରହୁ ପୀରତି-ପ୍ରଣତି,
ତାଙ୍କୁ କେ ଧରିବ ଯେବେ ନାହିଁ ତାର ରତି ?
ବଡ଼ ସେ ହଟିଆ ରାଣୀ, ସେ ତ ନଟବର,
ଧରୁ ଧରୁ ଖସି ସେ ତ ହୁଅଇ ଅନ୍ତର ।
ଗୁରୁପଦେ ଶୁଦ୍ଧ ମତି, ଗୁରୁରେ ପ୍ରଣତି,
ସାଧୁସଙ୍ଗ ବିନୁ ନାହିଁ ମିଳନ୍ତି ଶ୍ରୀପତି ।
ସାଧୁସେବା କର ରାଣୀ, ଭବୁ ହେବୁ ପାର,
ଇହ ପର ସୁଖ ଛାଡ଼ି, ସାଧୁପଦ ଧର ।"
ଦାସୀ କଥା ଶୁଣି ରାଣୀ ମନ ଦୃଢ଼ କଲା,
ଅନ୍ତଃପୁରେ ବନ୍ଦୀ ସେ କଥା ଭୁଲିଗଲା ।
ଯୋଗକୁ ଦିଲ୍ଲୀ ନଗରେ ରହିଛନ୍ତି ପତି,
ମିଳିଲେ ନଅର ପାଖେ ଯତି ଶୁଦ୍ଧମତି ।

ବୈରାଗ୍ୟର ପ୍ରତିମୂର୍ତ୍ତି    ବନ୍ଧୁପ୍ରେମେ ଭୋଳା ।
ଦେଖୁଁ ପ୍ରେମ-ତେଜ ରାଜ୍ୟ-    ସାରା ଖେଳିଗଲା ।
ପତିଙ୍କୁ ଭେଟିବେ ରାଣୀ    ମନ ଦୃଢ଼ କଲେ,
ନିରୋଧ ନ ମାନି ବଳେ    ପରଦା କାଟିଲେ ।
ନଅର ବାହାରେ ରାଣୀ    ଯତିଜନ ଭେଟେ,
ଘରେ ଫେରା ପ୍ରେମେ ରାଣୀ    ଯତି ପଦେ ଲୋଟେ ।
'ଶ୍ରୀ ଚରଣ ମିତ୍ର' ରାଣୀ    ଶୁଣେ ଆଶୀର୍ବାଦ,
ପ୍ରେମେ ଅଶ୍ରୁ ଝରେ, ପ୍ରାଣେ    ଅପାର ଆନନ୍ଦ ।
ନଅରେ ବାହୁଡ଼ି ରାଣୀ    ନିଜ ଦୋଷ ଶୁଣେ,
ଲଜ୍ଜା, ମର୍ଯ୍ୟାଦା, ପରଦା    ଦଳିଲେ ଚରଣେ ।
"ମୁଁ ପରା ଜନନୀ, ତୁମେ    ପୁଅ ଝିଅ ମୋର !"
କହେ ରାଣୀ, "ମାତୃ କୁତ୍ସା    ଅତି ଅସୁନ୍ଦର !"
ପଦକରେ ଶାନ୍ତ ହେଲେ,    ଯେତେ ପୁରଜନେ,
ମନ୍ତ୍ରୀ ନ ବୁଝିଲେ ଧର୍ମ    ଅହଙ୍କାର ମନେ ।
ଦିଲ୍ଲୀକୁ ଲେଖିଲେ କଡ଼ା,    ନାଚେ ରାଜା କୋପେ,
ରାଗରେ ଶରୀର ଥରେ,    ଦନ୍ତେ ଓଷ୍ଠ ଚାପେ ।
ଜନନୀ ସମ୍ବାଦ କିଛି    ଶୁଣିବାର ଆଶେ
ଆସିଗଲେ ପ୍ରେମସିଂହ    ପିତାଙ୍କର ପାଶେ ।
ମାଆ ଭାବ ପୁଅଠାରେ    କିଛି ଯାଏ ଜଣା,
ଗଳାରେ ତୁଳସୀମାଳା,    ତିଳକ ରଚନା ।
ପୁତ୍ରେ ଦେଖି ପିତା ଭାଷେ    ଅବଜ୍ଞା ବଚନ,
"ଆସ ଆସ ସାଧୁପୁଅ    ସାଧୁଣୀନନ୍ଦନ ।
ପିତୃକ୍ରୋଧ ଦେଖି ସୁତ    ହୋଇଲା ଅନ୍ତର,
ମାତାର ଚରଣେ ଲେଖେ    ବିନମ୍ର ପତର ।

"ମାତା ଯେନ ଶତ ଶତ ଚରଣେ ପ୍ରଣାମ,
ସୁତ ତୋର ନେଉଅଛି ନିତ ନିତ ନାମ ।
ପିତା ଆଜ ଦେଲେ ମୋତେ ଆଶୀର୍ବାଦ ଡାକି,
'ଆସ ସାଧୁପୁଅ, ଆସ ସାଧୁଣୀସଙ୍ଗାଳି ।'
ସାଧୁଣୀସଙ୍ଗାଳି ମାଆ ! ପାରିବ କି ହୋଇ ?
ତୋ ପରି ଅନ୍ତରେ ଭକ୍ତି- ପ୍ରୀତିବଳ କାହିଁ ?
କୃପା କଲେ ହରି ହୃଦେ ଭକ୍ତି ହୁଏ ଜାତ,
ଭେକ ଧରି କ୍ରମେ ହୁଏ ଅନ୍ତର ମହତ ।
ଅନ୍ତର ନୈବେଦ୍ୟ ବନ୍ଧୁ— ପଦ ହୁଏ ଧରି,
କର ଆଶୀର୍ବାଦ, ଯୋଗ୍ୟସୁତ ହୁଏ ତୋରି ।"
ପଦ ପଡ଼ି ମାତା ଘରେ ପାଇଣ ଆଶ୍ୱାସ,
"ଇଚ୍ଛା ପୂର୍ଣ ମାତୃପ୍ରାଣେ ଭରଇ ବିଶ୍ୱାସ ।
ଉତ୍ସାହ ସାହସ ଦେଇ ଚଳାଏ ମାତାରେ,
ମାତାର ମୁକତି ପାଇଁ ପ୍ରାଣପାତ କରେ ।"
ଫିଙ୍ଗିଦେଲେ ରାଣୀ ବେଶ ରତ୍ନ ଅଲଙ୍କାର,
ପଲଙ୍କ ତେଜି ବସିଲେ ତୃଣାସନ ପର ।
ବିକଟେ ହବିଷ୍ୟ, ନାହିଁ ରାଜାର ବ୍ୟଞ୍ଜନ,
ପୁତ୍ରେ ଲେଖେ, "ଆସ ପୁଅ, ପରୀକ୍ଷା ତୁ ଯେନ ।
ସାଧୁଣୀ କି ନୁହେ ମାଆ ପରୀକ୍ଷା ତୁ କର,
ସାଧୁଣୀର ପୁଅ ହୁଅ, ସେ ମୋ ପୁରସ୍କାର ।"
ପତ୍ର କଥା ଶୁଣି ନୃପ ପୁତ୍ରେ ମାରି ଧାଇଁ,
ନୃପତିଙ୍କୁ ନିରେଧିଲେ, ଅମାତ୍ୟେ ବୁଝାଇ ।
ଦିଲ୍ଲୀ ଗୁଡ଼ ମାଧୋସିଂହ ପୁରେ ଆସି ରହି,
ମାରିବେ କପଟ ରାଣୀ, ବିପ୍ଳବ ପଡ଼ଇ ।

ସ୍ଥିର ହେଲା ଦୁଷ୍ଟ ବୁଦ୍ଧି ଦେଲେ ମୀଚଜନ,
'ପୋଷା ସିଂହ ଛାଡ଼ିଦେବା କରୁ ସେ ଭୋଜନ ।'
ପର ଦିନ ପ୍ରାତଃକାଳ, ରାଣୀ ପୂଜାରତ,
ସିଂହର ପଞ୍ଜୁରୀ ଖୋଲେ, ସିଂହ ଉପଗତ ।
ଦାସୀ ଡାକେ ଉଚ୍ଚେ, "ସିଂହ, ସିଂହ ଆସେ ରାଣୀ !"
ଚେତା ନାହିଁ, ରାଣୀ କର୍ଣ୍ଣେ ନ ବାଜେ ସେ ବାଣୀ ।
ଦେହସାରା କଣ୍ଟକିତ ପ୍ରେମେ ଅଶ୍ରୁ ଝରେ,
ତନ ମନ ଅର୍ପି ଦେଇ ରାଣୀ ପୂଜା କରେ ।
ଦାସୀ ଛାଡ଼େ ଘୋର ରଡ଼ି, ରାଣୀ ଖୋଲେ ଆଖି,
"କି ଭାଗ୍ୟ ! ପ୍ରହ୍ଲାଦ ସ୍ୱାମୀ ନରସିଂହ ଦେଖି !
ଆସନ୍ତୁ, ବସନ୍ତୁ ଦେବ ଦାସୀ ସେବା ହେନ,
ରାଣୀ ପାଦ୍ୟଅର୍ଘ୍ୟ ଦେଲେ, କୁସୁମ, ଚନ୍ଦନ ।
ନରସିଂହ ମନ୍ତ୍ରେ ରାଣୀ କରୁଛନ୍ତି ପୂଜା,
ସିଂହ ନଇବେଦ୍ୟ ଧରେ ଦେଖ କେଡ଼େ ମଜା !
"ସିଂହେ ନରସିଂହ ଭାବ ରାଣୀ କରେ ପୂଜା,
ସୁଖେ ସିଂହ ନଇବେଦ୍ୟ ଖାଏ," ଶୁଣେ ରାଜା ।
ନୈବେଦ୍ୟ ଭକ୍ଷିଲା ସିଂହ, କି ପୋଷା ମାର୍ଜାରୀ,
ବାହାରକୁ ଡେଇଁ ଦୁଷ୍ଟେ ମାରେ ବକ୍ଷ ଚିରି !
ଖୋଜି ଖୋଜି ଦୁଷ୍ଟେ ଧରି ସିଂହ ବକ୍ଷ ଚିରେ,
କୁଟ ବୁଦ୍ଧି ଦେଲେ ଯେହ୍ନ ରାଜାଙ୍କ ମନରେ ।
ହାହାକାର ପଡ଼ିଗଲା, ରାଜା ଆସେ ଧାଇଁ,
ମାର୍ଜାରୀ ସମାନ ସିଂହ ପଞ୍ଜୁରିକୁ ଯାଇ !
ସାରା ଦୁର୍ଭାବନା ଗଲା, ଖୋଲେ ନୃପ ଆଖି,
ପ୍ରୀତିରେ ଲୋତକ ଝରେ ରାଣୀପୂଜା ଦେଖି ।

କରନ୍ତି ନୃପତି ନତ ରାଣୀ ପଦେ ଶିର,
ରାଣୀ କହେ, "ନୃପ ପୂଜ — ଛନ୍ତି ବଂଶୀଧର !"
ସମ୍ମୁଖେ ଯୁଗଳ ରୂପ ଦେଖୁଛନ୍ତି ରାଣୀ,
ବାମେ ରାଧା ରାଣୀ, ମୃଦୁ- ହାସେ ବେଣୁପାଣି ।
ରାଜା—ପାପୀରେ ଦେଖାଉ, ରାଣୀ ! ଜାଣୁନ କି ଗୁଣି,
ଯୋଗୀରେ ଅଲଭ୍ୟ ଏ ତ କୃଷ୍ଣ ରାଧାରାଣୀ !
ରାଣୀ—ଦେଖନ୍ତୁ ପରାଣଧନ ! ସାର୍ଥକ ସାଧନା,
ରାଜା ଆଜ୍ଞା ମିଳୁ, କରେ ପୂଜା-ବନ୍ଦାପନା ।
ଯୁଗଳ ମୂରତି କ୍ଷଣେ ହୋଇଲେ ଅନ୍ତର,
ରାଣୀ ସଙ୍ଗେ ରାଜା ଧରେ ବେଶ ସନ୍ନ୍ୟାସୀର ।
ରାଜ୍ୟର ବଇଭବେ ପୁତ୍ର କରେ ପୂଜାଦାନ,
କୃତାର୍ଥ ଜୀବନ ଦେଖି ନରେ ନାରାୟଣ ।

× × ×

ଜୟ ବଂଶୀଧାରୀ, ଜୟ ଯୁଗଳ ମୂରତି,
ହୃଦେ ଭକ୍ତି ହୋଇ ସତୀ, ଚଖାଅ ପୀରତି ।
ଭେକୁଁ ଆସ୍ଥା ତୁଟୁ, ହେଉ ଅନ୍ତର ସୁନ୍ଦର,
ତୁମରି ନୈବେଦ୍ୟ ରଚ, ତୁମେ ବଂଶୀଧର ।

---

## ଭୂଗର୍ଭରେ ସଂକୀର୍ତ୍ତନ

ଜନ୍ମସ୍ଥାନ ବୀରଭୂମି, ତହିଁ ଏକ ଗ୍ରାମ,
ଭକତ କୁମ୍ଭାର ରହେ କୁବା ତାର ନାମ ।
ପତ୍ନୀ ନାମ ପୁଷ୍ପ ତାର ପତିରେ ପୀରତି,
ମାଟି ହାଣ୍ଡି ଗଢ଼ି ବିକି ସୁଖରେ ଚଳନ୍ତି ।

ଧନରେ ନ ଥାଏ ଲୋଭ, ଗଡ଼ନ୍ତି ଅଳପ,
ଭଜନେ ସମସ୍ତ ଯାଏ, କରି ଜପ ତପ ।
ଅଭ୍ୟାଗତ ସେବା ଅବା ଅତିଥି ପୂଜନ,
ଗ୍ରାମ୍ୟରେ ଖୁଣ୍ଟିଲେ ପରି- ତୃପ୍ତ ପ୍ରାଣ ମନ ।
ଧନ କରେ ଲୋକ, ଧନୀ ହୁଏ ବ୍ୟୟେ ତାର,
ବ୍ୟୟଟି ଉତ୍ତମ କଥା, ବୁଝିଲେ ବିଜ୍ଞ ନର ।
ଦାନ, ଭୋଗ, ନାଶ ତିନି ଧନର ତ ଗତି,
ସଞ୍ଚିଲେ ସମ୍ପଦ କ୍ରମେ ନଷ୍ଟ କରେ ମତି ।
ଭୋଗରେ ଲଗିଲେ ରୋଗ, ପାପ ହୁଏ ସାର,
ଅତିଥିସେବା, ଦାନରେ ସମ୍ପଦ ସଫଳ ।
ଧନର ଏ ଗୁଣ, ଦୋଷ ଜାଣନ୍ତି ଦମ୍ପତି,
ଧନ ଥିଲେ, ଆଦରେ ସେ ଅତିଥି ପୂଜନ୍ତି ।
ଗ୍ରାମକୁ ଆସିଲେ ଥରେ ସାଧୁ ଦୁଇ ଶତ,
କେହି ନ କରନ୍ତି ସେବା ବଡ଼ ହିଁ କ୍ଷୁଧିତ ।
ଶେଠ, ସାହୁକାର, ଯେବା ଥିଲେ ଅର୍ଥପତି,
କୁବା ନାମ କହି ଦେଲେ— ଗଲେ ତାର କତି ।
ଦେଖିଣ ସାଧୁମଣ୍ଡଳ କୁବା ଆନନ୍ଦିତ,
ପଦେ ପଡ଼ି ଜଣେ ଜଣେ କରେ ଦଣ୍ଡବତ ।
ଆସନ ଦେଇଣ କୁବା ବସିଲେ ସକଳ,
ଅର୍ଥ ନାହିଁ ସାଧୁ କେମନ୍ତେ ଖୁଆଇବି ଭଲ !
ଉଧାର ମାଗଇ ଯାଇ ମହାଜନ ଘରେ,
ସତ୍ୟ ଲୋକ ବୋଲି ତାର ସ୍ନେହ କୁବା ଠାରେ ।
ଦୁଇଶ ସାଧୁଙ୍କ ପାଇଁ ଘୃତ, ଡାଲି, ଅନ୍ନ,
ମହାଜନ କ ଯୋଗାଇବା ? କେତେ ଲୋଡ଼ା ଧନ !

ଗଣେବ ନ ଘୁଡ଼େ, ତର— ଗଲେ ଅର୍ଥପତ,
କୁବା ରହିଅଛି ଦୃଢ଼, ପୂଜବ ଅତଥି ।
ଗରବର ଘବେ ତର— ଜଲ ମହାଜନ,
କହଲ, ମୋ ପାଇଁ କୂପ କରିବୁ ଖନନ ।
ପତ ପତ୍ନୀ ଦୁଇ ମିଳ ଖୋଳଦେବ କୂଅ,
ଅଟା, ଡାଲ, ଦିଅ ଯେତେ ଲୋଡ଼ା ଲେଖିନଅ ।
ହରଷରେ କୁବା ସେଥି ଦେଲ ସନମତ,
ସୁଖେ ସାଧୁ ଭୁଞ୍ଜାଇଲ ପାଇଲ ତୃପତି ।
ଆଶୀର୍ବାଦ ଦେଇ ସାଧୁ ତୁଷ୍ଟ ହୋଇଗଲେ,
ସମ୍ପଦ କ ସତ ହେବ କେବେ ଏହା ଭୁଲେ !
ଦିନାକେତେ ଗଲ କୁବା ମାନସ ଚଞ୍ଚଳ,
ଖୋଳବାକୁ କୂଅ ଆସେ ମହାଜନ ଘର ।
ପୁଷି ଦୂରେ ଫିଙ୍ଗେ ମାଟି କୁବା ମାଟି ଖୋଳେ,
ଖୋଳ ଖୋଳ କୁବା କ୍ରମେ ଗଲ ତଳୁତଳେ ।
ଖସିପଡ଼ିଲ କଡ଼ୁଁ ମାଟି କୁବା ପୋତିହେଲ,
କ ହେଲ, କ ହେଲ ବୋଲି ଚହଳ ପଡ଼ିଲ ।
ଜମିଲେ ବହୁତ ଲୋକ ଦେଖିଲେ ବିଗୁର,
ବାହାର କରିବା ସାଧ ନୁହେ ଖୋଳକର ।
ଉଠାଉ ଉଠାଉ ମାଟି ଶ୍ୱାସରୁଦ୍ଧ ହେବ,
ସେଯାଏଁ ତ କେବେ ପିଣ୍ଡେ ପରାଣ ନ ଥିବ ।
ପୁଷିର ବ୍ୟାକୁଳ ପ୍ରାଣେ କ କରୁଣ ଭାବ !
କାନ୍ଦି କହେ କ କଲୁ ରେ, କ କଲୁ ଦଇବ !
ପୁଷିକୁ ବୁଝାଇ ଲୋକେ ନେଇଗଲେ ଘରେ,
ଦୟାକରି ଧନଦ୍ରବ୍ୟ କେହୁ ଅବା ଦେଲେ ।

ବର୍ଷା ହେଲା, କୂଅ ମାଟି- ପାଣିରେ ପୂରିଲା,
ପୁଣି ଛଡ଼ା କୁବା କାହା ମନେ ନ ପଡ଼ିଲା !
ଥରେ ଯାଉଥିଲେ ବାଟେ ନମାଜିତ ଦଳେ,
ତମ୍ବୁ ପକାଇଲେ କୂଅ ପାଖ ବୃକ୍ଷତଳେ ।
ମହାନ୍ତ ଶୁଣିଲେ, କୂପ ତଳରେ ତହଳ,
ଉଠଇ ମୃଦଙ୍ଗଧ୍ୱନି ବାଜେ କରତାଳ !
ଏ ଅଦ୍ଭୁତ ସଂକୀର୍ତ୍ତନ ହୁଅନ୍ତେ ପ୍ରଚୁର,
ଜମିଲେ ରାଇଜ ଲୋକେ ରାଜା ମନ୍ତ୍ରୀବର !
ରାଜାଦେଶେ ଖୋଳିବାରେ ଲାଗିଗଲେ କେତେ,
କୂଅ ସଫା ହେଲା ଲୋକେ ଦେଖିଲେ ଚକିତେ ।
ତଳେ ବସିଅଛି ଦିବ୍ୟ ବିମଳ ନର୍ତ୍ତଶ୍ରୀ,
ପାଖେ ଛନ୍ତି ଶଙ୍ଖ-ଚକ୍ର- ଗଦା-ପଦ୍ମଧାରୀ !
ସମ୍ମୁଖେ କୁବା ନାଚୁଛି ବଜାଇ ମର୍ଦ୍ଦଳ,
କେବେ ଅବା ହସ୍ତେ ଧରି ବାଏ କରତାଳ ।
ଦେଖିଲେ, ରାଜନ ମନ୍ତ୍ରୀ ଲୋକ ଶହ ଶତ,
ଦେଖୁ ଦେଖୁ ଭଗବାନ ହେଲେ ଅନ୍ତର୍ହିତ ।
ମହା ଭଗବତ କୁବା, ତା ଚରଣ-ଧୂଳି,
ରାଜା, ମନ୍ତ୍ରୀ, ସର୍ବଜନ ଘେନଲେ ମଉଳି !
ଧନ୍ୟ ଧନ୍ୟ କୁବା ଧନ୍ୟ ତୋହର ଜୀବନ,
ତୋ ଘେନ ତରିଲେ ଜନେ ଦେଖି ଭଗବାନ ।
ପତି ଦେଖି ପ୍ରତିବ୍ରତା ନେତ୍ରୁଁ ଅଶ୍ରୁ ଝରେ,
ଦୂର ଦୂରାନ୍ତରୁ ଦେଖି ଆସନ୍ତି କୁବାରେ ।
ରାଜା ଆସି ନିୟମିତ କରନ୍ତି ଦର୍ଶନ,
ଦେବତାଙ୍କ ବଳି କୁବା ପାଅଇ ସମ୍ମାନ ।

କାଙ୍ଗାଳର ହରି ସେ ତ ଦରିଦ୍ରର ନାହା,
ବିପଦେ ଆପଦେ ସଦା ଭକତର ସାହା ।
ଭକତ ରଖିବା ପାଇଁ ଲୀଳା ବିସ୍ତାରିଲେ,
ଘଣ୍ଟ ଘୋଡ଼ାଇ କୁବାରରେ ଭୂତଳେ ରଖିଲେ ।
କୁବା ସଙ୍ଗ ମେଳେ ଜନେ ହାଇଲେ ସୁଗତି,
ଉପଦେଶେ ବଦଳିଲା କେତେ ପାପ ମତି ।
ପଡ଼ିଲା ଅକାଳ ଥରେ ଲୋକେ ମଲେ ଗଡ଼ି,
'ହା ଅନ୍ନ', 'ହା ଅନ୍ନ' ଚତୁର୍ଦ୍ଦିଗେ ଶୁଭେ ରଡ଼ି ।
କୁବା ପାଶେ ଜମି ଲୋକେ ଧରିଲେ ପୟର
କୁ ବା ମୁଦେ ଆଖି, ଖୋଲେ ଲକ୍ଷ୍ମୀ ଗନ୍ଧାଘର ! -
ଅନ୍ନ ପାଇ ସେ ଅକାଳୁ ବଞ୍ଚିଗଲେ ଲୋକ;
କାଳ କାଳ ରହିଅଛି ଭକତର ଟେକ ।

× × ×

ଜୟ ଦୀନବନ୍ଧୁ, ଭକ୍ତ- ଆରତ-ଭଞ୍ଜନ
ଜୟ କାଙ୍ଗାଳର ହରି, ଭକତ-ରଞ୍ଜନ ।
ଜୟ ଦେବ ବିଚିତ୍ରକର୍ମା, ଜୟ ଲୀଳାମୟ,
ଶୁଣି ଦୀନ ଡାକ, ଦିଅ ଅଭୟ ଆଶ୍ରୟ ।

---

# ପ୍ରୟାଗ ମାମୁ

ଜନକ-ନନ୍ଦିନୀ ସୀତା ପୂତା ଜନ୍ମଭୂମି,
ତୀର୍ଥସମ୍ପଦେ ଦେଖନ୍ତି ପାନ୍ଥୀ, ମୁକ୍ତିକାମୀ ।
ଜନକପୁର ବିଦେହେ ଉନ୍ନତ, ମହତ,
କନକ ବର୍ଷ ତଳର ହେବ ଏ ବଚିତ ।

ବିଧବା ବ୍ରାହ୍ମଣୀ ରହେ　　ବରଷ୍ଠ କୁଟୀର,
କୋଳକୁ ମାତର ତାର　　ଏକଇ କୁମର ।
କୁମର ନୂହଇ ମାତା　　ଚରଣପଙ୍କଜ,
ନୟନର ମଣି ସେ ତ　　ଦୁଃଖ-ଶୋକହର ।
ମାତା ପିତା ଯାଇଥିଲେ　　ପ୍ରୟାଗ ସ୍ନାହାନେ,
ଫେରି ଆସି ପୁଅ ଜନ-　　ମିଲା ଦୁଇ ଦିନେ ।
ଆନନ୍ଦେ ନନ୍ଦନ ନାମ　　ପ୍ରୟାଗ ସେ ଦେଲେ,
ଶିଶୁପୁତ୍ର ରଖି ପିତା　　ସଂସାର ଛାଡ଼ିଲେ ।
ଜନକପୁରର ଲୋକ　　ମୁଖେ ଏବେ ଶୁଣି,
ଜନକନନ୍ଦିନୀ ତାଙ୍କ　　ଝିଅ ବା ଭଉଣୀ ।
ପ୍ରୟାଗ ପୁଚ୍ଛଇ, ' ମୋର　　କିଏ ଅଛି ଆଜି ?''
"ଅଛଇ ଭଉଣୀ," ମାଆ　　କହେ, "ରାଣୀ ସେହୁ ।"
"ରାମ ଚକ୍ରବର୍ତ୍ତୀ ଅଯୋ-　　ଧ୍ୟାରେ ତାଙ୍କ ଘର,
ସୁତା ମୋ ଜାନକୀ ପ୍ରାଣ-　　ପ୍ରିୟା ପତ୍ନୀ ତାର ।"
ପ୍ରୟାଗ ଉତ୍ସନ୍ନ ହୁଏ,　　ଦେଖିବ ଭଉଣୀ,
ବଡ଼ ହୁଅ 'ଦେଖିଯିବୁ,'　　ବୁଝାଏ ଜନନୀ ।
ଭଣୋଇ ଭଉଣୀ କଥା　　ପିଲାଦିନୁ ମନେ,
ଛାପି ହୋଇ ଯାଇଥିଲା　　ଶୁଣି ପ୍ରତି ଦିନେ ।
ବିଧବା ବଡ଼ ଭକତା,　　ଜପେ ରାମନାମ,
ଜନକତନୟାଠାରେ　　ବଡ଼ ତାର ପ୍ରେମ ।
ପୁଅ ଜିଦ୍ କରେ ଯିବ　　ଜନକନଗରୀ,
ଭଉଣୀ ଭଣୋଇ ଦେଖି　　ଆସିବ ସେ ଫେରି ।
ଅନ୍ତର ନିର୍ଭରେ ମାତା　　ଶୋଚେ ମନେ ମନେ,
"ଅବୋଧ ଘଇ କି ସୀତା　　ଦେଖିବେ ଯତନେ ?

ଜଗତର ଲକ୍ଷ୍ମୀ ସେ ତ ରାଜାର ନନ୍ଦିନୀ,
କି ଅବା ସମ୍ପଦ ସର ମିବ ଭାଇ ଘେନି ?
ରାମ ଚକ୍ରବର୍ତ୍ତୀ ନିଶ୍ଚେ କରିବେ କରୁଣା,
ଅନ୍ତର ବଳଇ ଯେବେ ନ କରିବ ମନା !"
ସମ୍ମତି ଭରିଲା ମାତା, ପୁଅ ଆନନ୍ଦିତ;
ଖାଲି ହାତେ କପରି ସେ ପଠାଇବ ସୁତ ?
ଶୂନ୍ୟ ହାତେ ଝିଅଘରେ କି କହିବେ ଜନେ !
ଧାର କରି ଆଣିଲା ସେ ଖୁଦ ଦୁଇ ମାଣେ ।
ଯତନେ କରିଲା ଚୂନା, ଗଢ଼ିଲା ମୋଦକ,
ଝିଅ ପାଇଁ ପଠାଇଲା ରଖି ନିଜ ଟେକ ।
ପୁଅ ବାଟେ ଖାଇବାକୁ ଦେଲା ଛତୁ କଛୁ,
କୁମରକୁ ପିନ୍ଧାଇଲା ପେଡ଼ି ଲୁଗା ବାଛୁ ।
ଚୁମ୍ବ ଦେଇ ମୁଖେ କହେ, "ପରାଣ-ସଙ୍ଗାଳି,
ନିଶ୍ଚେ ଦୁଇ ଚାରି ଦିନେ ଆସିବୁ ତୁ ଫେରି ।
ଦଣ୍ଡେ ନ ଦେଖିଲେ ମୁଁ ତ ହୁଅଇ ବାୟାଣୀ,
ଦୁଇ ଚାରି ଦିନ କେହ୍ନେ ରହିବଇଁ ପୁଣି ?"
ମାତା ପଦେ ନମି ପୁତ୍ର ହୁଅଇ ଅନ୍ତର,
ରାମନାମ ଜପେ ମାତା, ନେତ୍ରୁ ଝରେ ନୀର ।
ଚାଲି ଚାଲି ପୁଅ କଷ୍ଟେ ଅଯୋଧ୍ୟା ଧଇଲା ,
ଭଣୋଇ ସମ୍ବାଦ ଜଣେ ଜଣେ ପଚାରିଲା ।
ପ୍ରୟାଗ ପଚାରେ ପ୍ରଶ୍ନ, ହସଇ ଯେ ଶୁଣେ,
ଗୋଡ଼ ଥକିଗଲା ବୁଲି ବୁଲି ଏଣେ ତେଣେ ।
ପ୍ରୟାଗ ଭାବଇ ମନେ, "ଆଚ୍ଛା ତ ଭେଣୋଇଁ !
ସ୍ଥାନ ଛାଡ଼ି କାହିଁଗଲେ, ପତ୍ତା ମିଳୁ ନାହିଁ ।"

ମଣି ପର୍ବତର ପାଖେ ସୁନ୍ଦର ମନ୍ଦର,
ସମ୍ମୁଖରେ ପୁଷ୍କରଣୀ ଅତି ମନୋହର ।
ମନ୍ଦରରୁ କୂଳଯାଏ ପ୍ରଶସ୍ତ ସୋପାନ,
ଚତୁର୍ଦ୍ଦିଗେ ଫଳବୃକ୍ଷ ଦିଶଇ ଯତନ ।
କ୍ଲାନ୍ତ ହୋଇ ବୃକ୍ଷ ତଳେ ପ୍ରୟାଗ ବସିଲା,
ଭଣୋଇରେ ରାଗ, "ଏଥି ଥିଲା କାହିଁଗଲା ?
ସମ୍ବାଦ ନ ମିଳେ କିଛି, ପଚାରିବ କାରେ ?
ଏପରି ବାନ୍ଧବ କାହିଁ ଅଛି ନା ସଂସାରେ ?
ଖୋଜି ଖୋଜି ଥକିଲଣି, ନ ପାରଇ ଚାଲି,
ଭଣୋଇର ଇଚ୍ଛା ହେଲେ, ଖୋଜୁ ଶଳା ବୋଲି !"
ଚକ୍ରବର୍ତ୍ତୀ ରାଜା ସେ ତ ଜଗତର ନାଥ,
ଖୋଜି ପାଇବାକୁ କିଏ ହେବ ସମରଥ ?
ନିଜେ ଆସି, କୃପା କରି ନ ଦେଲେ ସେ ଧରା ,
ଖୋଜୁଥାଅ, ନ ମିଳିବେ, ସାରା ବସୁନ୍ଧରା ।
ପ୍ରୟାଗର ମନେ ରାଗ; ଅନ୍ତରେ ନିର୍ଭର,
ବାଜିଲା ପରାଣେ ରାମ ହୋଇଲେ ଅସ୍ଥିର ।
ପ୍ରୟାଗ ଦେଖଇ ଧଳା ହାତୀ ପରେ ବସି,
ଆସନ୍ତି ଦି ଜଣ ବୃହୁଁ- ଛନ୍ତି ହସି ହସି ।
ସୁବର୍ଣ୍ଣ ଅମାରି ପରେ ରତ୍ନ-ସିଂହାସନ,
ବସିଛନ୍ତି ରାଜାରାଣୀ ଦିଶନ୍ତି ଯତନ ।
ଶିରେ ସୁବର୍ଣ୍ଣ-ମୁକୁଟ ମଣିରତ୍ନ ଭରା,
ଉଜ୍ଜ୍ୱଳ ଶ୍ୟାମଳ ତନୁ ଫୁଟି ଦିଶେ ତୋରା ।
ପ୍ରୟାଗ ଚହିଁଲା, ସେ ତା ଭଉଣୀ ଭଣୋଇଁ,
କେତେ କାଳୁ ପରିଚିତ ତାର ଅବା ସେହି !

ପ୍ରୟାଗ ପାଖକୁ ଆସି ବସି ପଡ଼େ ହାଟ,
ଭଣେଇ ଭଉଣୀ ହସି ହସି ହେଉଥାନ୍ତି ।
ଜାନକୀ କହନ୍ତି, "ଭାଇ, ଭଉଣୀର ପାଇଁ,
କେତେ କଷ୍ଟ ସହ୍ୟ ବାବୁ ! ଆସିଲୁ ତୁ ଧାଇଁ !
ମାତା ଦେଇଛନ୍ତି ଦ୍ରବ୍ୟ, ଦେଉ ନାହୁଁ ମୋତେ"
ଆବା କାବା ହୋଇ ଭାଇ ଗୃହିଛୁ ପୂରତେ !
ଆରେ ବାଃ ଖେଳଇ କେନ୍ୟାଙ୍କ ଏ କ ରୂପରାଶି,
ଆଖି କହେ କାଲ କାଲ ଦେଖୁଥାନ୍ତି ବସି !
ଅଙ୍ଗ କହେ, କୁଣ୍ଢାଇଣ ମିଶାନ୍ତି ଅଙ୍ଗରେ,
ଶୁଣିବାକୁ କଥା ଶକ୍ତି ନାହିଁ ତା ଶ୍ରୁତିରେ !
କଛୁ କାଳେ ପ୍ରୟାଗର ଆସିଲା ଚେତନା,
ମୋଦକ ପୋଟଳୀ ଦେଲା ହୋଇ ପ୍ରୀତମନା ।
ରଘୁପତି ଦୁଇ ନେଲେ ପତ୍ନୀ ହସ୍ତେ ଦୁଇ,
ଦେଇଣ କହିଲେ, "ରଖ ବାକୀ ତୁମ ପାଇଁ ।
ମାଆଙ୍କୁ କହିବ, ଆମେ ଅଛୁ ଦୁହେଁ ଭଲେ,
ବେଳେ ବେଳେ ଦେଖାହେବ ଇଚ୍ଛା ଦୃଢ଼ କଲେ ।"
କ୍ଷଣକେ ଚଢ଼ିଲେ ହାଣ୍ଡି ହୋଇଲେ ଅନ୍ତର,
ପ୍ରୟାଗ ନ ପାରେ ସହି, ଚେତା ବୁଡ଼େ ତାର ।
ଆସି ମିଳିଗଲେ ସାଧୁ ଦେଖି ଏ ଅବସ୍ଥା,
ଆଶ୍ରମେ ନିବାକୁ ନେଇ କଲେ ସେ ବ୍ୟବସ୍ଥା ।
ପ୍ରୟାଗ ଚେତନା ପାଇ ମିଟାଏ ଲୋଚନ,
ସମ୍ମୁଖେ ଦେଖଇ ଗୁମ୍ଫା ଶୁଦ୍ଧ ବିମୋହନ ।
ବସିଛନ୍ତି ପାଖେ ସାଧୁ, ରହିଛନ୍ତି ଗୃହିଁ,
କହେ, "କାହିଁ ଗଲେ ବାବା ! ଭଉଣୀ ଭଣେଇ ?

ଖାଟରୁ ଓହ୍ଲାଇ ଦୁହେଁ ହୋଇଥିଲେ ଠିଆ ।
ମୃଦୁ ହାସେ ଭାଉଥିଲେ ଘୁଡ଼ିଗଲେ କଆଁ ?
ସେତ ରଜାର କୁମର ବ୍ରହ୍ମାଣ୍ଡ ଗୋସାଇଁ,
ପଥର-ଭିକାରୀ ମୋରେ ଦୟା ତଲେ ନାହିଁ !
ନାମ ଜଗତର ମାତା ଲକ୍ଷ୍ମୀ ଠାକୁରାଣୀ,
ଚାହିଁଥିଲେ ମୃଦୁ ହସେ, କି ଚାରୁ ଚାହାଣୀ !
ବିମ୍ବ ଜିଣି ରମ୍ୟ ଦଶେ ସୁରଙ୍ଗ ଅଧର,
ମଧୁହସେ ମୋ ଯେ ବାଣୀ, ଅମୃତରୁଁ ମଧୁର !"
ସାଧୁ ବୋଲେ, "ବାଳକ ରେ ! କେଡ଼େ ଭାଗ୍ୟ ତୋର !
ଦେଖିଲୁ ଜଗତମାତା, ବ୍ରହ୍ମାଣ୍ଡଠାକୁର !
ତୋର ପଦ ପଡ଼ି ପୂତ ହେଲା ଏ ଆଶ୍ରମ,
ରାତିରେ ବିଶ୍ରାମ ନିଅ, କାଲି ଯିବୁ ଗ୍ରାମ ।
କି ସମ୍ବନ୍ଧ ବାନ୍ଧି ବିଶ୍ୱ- କଲୁ ବିଶ୍ୱସାଇଁ,
ବୃଦ୍ଧ ହେଲୁ ଭଲ ଭଲ, ଏ କରୁଣା କାହିଁ ?"
ଘଡ଼ିଏ ତ ହେବ ରାତି ଦ୍ୱାରେ ଦୁଇ ନାରୀ,
କିବା ସେ ସୁନ୍ଦରପଣ, ଯାଏ ଜ୍ୟୋତି ଖେଳି !
କହନ୍ତି, "ପୂଜିଲୁ ଘରେ ପ୍ରଭୁ ଭଗବାନ,
ତୁମ ପାଇଁ ଏଇ ଭୋଗ ଦୁଇ ଥାଳୀ ଧେନ ।
କାଲି ତ ସକାଳେ ଆସି ନେଇଯିବୁ ଥାଳୀ,
ପ୍ରସାଦ ପାଅ, ନ ହୁଅ ସେଥିପାଇଁ ଭଳି ।"
ଚାଲିଗଲେ ନାରୀ, ସାଧୁ ଦେଖେ ଅଦଭୁତ,
ସୁବର୍ଣ୍ଣର ଥାଳୀ ସେ ଯେ ରତନଜଡ଼ିତ !
ପଦେ ଭଙ୍ଗା ଥାଇ ଫୁଟି ନ ଥିଲା ତା ଶୋଭା,
ଥାଳୀରୁ ଖେଳିଲା ଏବେ ଚଉଦିଗେ ବିଭା ।

ଥାଳୀର ଜ୍ୟୋତିର ସାଧୁ    କରନ୍ତି ଦର୍ଶନ,
କ୍ଷୀର, ପିଠା, ପୁଲି, ପୁରି    ବିବିଧ ବ୍ୟଞ୍ଜନ !
ଜଗତଜନନୀ ଦେଇ-    ଛନ୍ତି ଭାଇ ପାଇଁ,
ସାଧୁ ଭାବେ, "ଭାଗ୍ୟ ଥିଲା    ସେବା କରିବାଇଁ ।"
ଗଣ୍ଡେ ପ୍ରେମ-ଅଶ୍ରୁ ବହେ    କରନ୍ତି ଭୋଜନ,
ଜୀବନର ପାପତାପ    ହେଲା କି ଖଣ୍ଡନ !
ଭାଇ କହେ, "ନାମ ମୋର    କି ବନ୍ଦଣା ଜାଣେ ।"
"କାଙ୍ଗାଳର ହରି", ସାଧୁ    ଚିନ୍ତନ୍ତି ମନେ ମନେ ।
ଆନନ୍ଦେ ଶୟନ କଲେ    ପାହିଗଲା ରାତି,
ଥାଳୀ ଦେଖି କି କରିବେ    ଉଭୟେ ଭାବନ୍ତି ।
"ରତନର ଥାଳୀ ଏ ତ    ରାଜାଘର ଧନ,
ବଇରାଗୀ ଆଶ୍ରମରେ    କାହିଁ ଏହା ସ୍ଥାନ ?
"ପ୍ରୟାଗ ସଙ୍ଗରେ ନିଅ",    ନାସ୍ତିକରେ ସେହି,
"ନାନାଦ୍ରବ୍ୟ ଦେଖି ମାଆ    ମାରିବ ଗୋଡ଼ାଇ ।"
ରତ୍ନଥାଳୀ ଫିଙ୍ଗିଦେଲେ    ପୁଷ୍କରିଣୀ ଗର୍ଭେ
ମାତା କଥା ଭାଳି ପୁଅ    ଗଲେ ରାଜଦାଣ୍ଡେ ।
ରହିଛନ୍ତି ମାଆ ଦାଣ୍ଡେ    ଦୁଆର ଆବୋରି,
ଦେଖନ୍ତି ପୁତ୍ରକୁ କୋଳେ    ପଡ଼େ ଅଶ୍ରୁ ଝରି ।
ପୁଅଠୁଁ ଘଟଣା ଶୁଣି    ଜନନୀ ଚକିତ,
କହନ୍ତି,"ଜୀବନ ଧନ୍ୟ,    ତୋ ଦେଖନରେ ସୁତ !"
ନିତି ନିତି ଝିଅ ଜୋଇଁ    କଥା ଭାଳି ଭାଳି,
ବିଧବା ସୁଗତି ପାଇ    ସ୍ୱର୍ଗେ ଗଲା ଚଳି ।
ପିତୃଗୃହ ବିକି ମାତା    ଶୁଦ୍ଧଶ୍ରାଦ୍ଧ କଲା,
ନାମ ଭଣେଇ ପାଖକୁ    ପ୍ରୟାଗ ଚଳିଲା ।

ଅଯୋଧ୍ୟାକୁ ଆସି ଖୋଜେ ଭଉଣୀ ଭଣେଇ,
ଅଧକଧ ବୁଲି ପୁଚ୍ଛେ, "ନାମି ମୋର କାହିଁ ?"
ଭୁଲିଲ ପାନ ଭୋଜନ, ଭୁଲିଗଲ ବେଶ,
ଧୂଳିଧୂସରିତ ତନୁ ଫରଫର କେଶ ।
ତ୍ରିଲୋଚନ ସ୍ୱାମୀ ଆଗୁ ଚହ୍ନିଥିଲେ ତାରେ,
ଆଶ୍ରମେ ପ୍ରୟାଗେ ନେଲେ ଅତିଥି ବେଶରେ ।
ସାଧୁସଙ୍ଗ ପାଇ କ୍ରମେ ମତି ହେଲା ସ୍ଥିର,
ସାଧୁ ଦେଲେ ଦୀକ୍ଷା ନେଲା କଉପୀନ ଡୋର ।
ପ୍ରୟାଗ ଦାସ ନାମରେ ହେଲା ପରିଚିତ,
ମହାପ୍ରାଣ ଫୁଟି କ୍ରମେ ହେଲା ପ୍ରକଟିତ ।
ବନେ ବନେ ବୁଲୁ ବୁଲୁ ଯାଏ ଦିନରାତି,
ଦେଲେ ଭୁଞ୍ଜେ ଅନ୍ନ ଜଳ ଅଳପେ ଦେନନ୍ତି ।
ମହା ବନେ ଗଲେ ପଶି ନ ମିଳେ ସାକ୍ଷାତ,
ମାସ ମାସ ଯାଏ ଚାଲି ପତ୍ର ନ ମିଳେ ତ ।
ଠିଆହେଲେ ଖମ୍ବ ପରି ହୋଇଥାନ୍ତି ଠିଆ,
ମେରୁ ପରି ସହୁଥାନ୍ତି ଖରା-ବର୍ଷା-ବାଆ ।
ଲକ୍ଷ୍ମୀଙ୍କର ଭାଇ ବୋଲି ମାମୁ ହେଲେ ବୃଦ୍ଧ,
ପ୍ରୟାଗ ମାମୁଙ୍କୁ ନେଇ ପିଲାଙ୍କ ଆନନ୍ଦ ।
'ମାମୁ, ମାମୁ' ବୋଲି ପିଲେ କରନ୍ତି ତ ଗୋଳ,
ଭକତରେ ପାଦଧୂଳି ଦେନନ୍ତି ମାମୁର ।
ପରମହଂସଙ୍କୁ ମାମୁ ସମ୍ବନ୍ଧେ ବାନ୍ଧିଲେ,
ମୂର୍ତ୍ତ ସାଧୁ ସେବା ପାଇ ଜୀବ ଧନ୍ୟ କଲେ ।
ରାମ-ବନବାସ ଭାଳି ପ୍ରୟାଗ ଉଚ୍ଛନ୍ନ,
ନୀଳକଣ୍ଠ ପିବେ ଚାଳି ସ୍ଥିର କଲେ ଦିନ ।

ନାନ୍ନା ତ ରାଜଦୁଲାଳୀ ଅତି ସୁକୁମାରୀ,
କଣ୍ଟାବାଟେ ଖାଲି ପାଦେ ଚାଲିବ କପରି ?
ରାମ ଲଉକ୍ଷଣ ଦୁଇ ରାଜାର କୁମର,
ପାଦେ କଣ୍ଟା ଫୁଟି ବହୁ- ଥିବ ରକ୍ତଧାର ।
ପାଦେ କଣ୍ଟା ଫୁଟୁଥିବ ଏଇ ତ ଭାବନା !
ଘଣ୍ଟା ଘଣ୍ଟା କାନ୍ଦୁଥାନ୍ତି ନ ଶୁଣନ୍ତି ମନା ।
ଭିକ୍ଷାକରି ସମ୍ପାଦିଲେ ବୁଲି ଦ୍ୱାର ଦ୍ୱାର,
ବହୁ ଧନ ଲୋଡ଼ା ହେବ କରନ୍ତି ବିଚାର !
ବାଛି ବାଛି ଯୋତା ନେବେ ତିନି ଜଣ ପାଇଁ,
ବରାଦ ଦେଇ ତିନୋଟି ଖଟୁଲି ବନାଇଁ ।
ପ୍ରତି ଖଟୁଲିରେ ଥିବ ଦୁଇ ଦୁଇ ଭୂଲି ,
ସବୁ ବହି ଶିରେ ଯିବ ଚିତ୍ରକୂଟ ଚଳି ।
ଚିତ୍ରକୂଟ ଗଲେ ଚଳି ଶିରେ ସବୁ ବୋହି,
ସ୍ଫଟିକ ଶିଳା ପାଖରେ ରଖିଲେ ସଜାଇ ।
ଥୋଇଲେ ଖଟୁଲୀ ଝାଡ଼ି, ସଜାଇଲେ ଭୂଲି,
ଖଟୁଲୀ ତଳରେ ଯୋତା, ଗୁଡ଼ିଲେ ବୋବାଳି ।
"ଭଉଣୋଇ! ଆସିଲ କିଆଁ ଏ ଘୋର ବନସ୍ତେ !
ନାନ୍ନାଙ୍କୁ ଆଣିଲ ପୁଣି ନ କହିଲ ମୋତେ !
ପାଦେ କଣ୍ଟା ଗଳି ପଡୁଥିବ ରକ୍ତ ଝରି,
ବଡ଼ ସୁକୁମାରୀ ନାନ୍ନା ସହିବ କପରି ?
ପ୍ରୟାଗ-ଦାସକୁ ଡରି ଛପୁଛ କି ବନେ ?
ଆସ ଯୋତା ପିନ୍ଧାଇଣ ଦେବି ମୁଁ ଯତନେ ।"
ମୁଖ ଫେରାଇଣ ଦେଖେ ଶ୍ରୀରାମ ଲକ୍ଷ୍ମଣ,
ନାନ୍ନା ସଙ୍ଗେ ଖଟୁଲୀରେ କିବା ଶୋଭାବନ !

ଯୋଡା ଝାଡ଼ି ବେଗେ ଦିଏ ଝୁଣୋଇର ପାଦେ,
ଶୁଣାଇଣ ବଇରାଗରେ କହେ ପଦେ ପଦେ ।
"ରାଜଦ୍ୱାର ଛାଡ଼ି ବନେ ଆସିଲ କାହିଁକି,
କେତେ ସୁକୁମାରୀ ନାରୀ ତୁମେ ଜାଣ ନକି ?"
ଭଉଣୀ ପାଦେ ପାଦୁକା ପିନ୍ଧାଏ ଆଦରେ,
ନାରୀ କହେ, "ମୋ ପତିଙ୍କୁ ନିନ୍ଦୁ କାହିଁକି ରେ ?
ନିରୋଧ ନ ମାନି ମୁଁ ତ ଆସିଲଇଁ ବନେ,
ତାଙ୍କର କି ଦୋଷ ଅଛି ନିନ୍ଦୁ ଅକାରଣେ !"
ରାମଙ୍କ ଧିକ୍କାରେ ଆଉ ନ ଫିଟଇ ପାଟି,
ଲକ୍ଷ୍ମଣଙ୍କୁ ଅଳି କରେ ଯିବାକୁ ଲେଉଟି
ଶ୍ରୀରାମ କହନ୍ତି, "ଆମେ ସତ୍ୟ କି ଭାଙ୍ଗିବୁ ?
ଚଉଦ ବରଷ ଅନ୍ତେ ଘରେ ବାହୁଡ଼ିବୁ ;
ଖଟୋଲି ସୁପାତି ସବୁ ରାଜାଙ୍କୁ ସୁନ୍ଦର,
ବନର ବାବାଜି ଆମେ କି ହେବ ଆମର ?
ନେଇଯାଅ ଶିରେ ତୋଳି ଅଯୋଧ୍ୟାରେ ବସ,
ନିଜେ ବ୍ୟବହାର କର ଛାଡ଼ ଆମ ଆଶ ।"
ଶୁଣୁ ଶୁଣୁ କଥା ଆଉ ମୂର୍ତ୍ତି ନ ଦିଶିଲ ,
ଖଟୋଲି ମୂଟୁଲି ଅଛି ରୂପ ଉଭାଇଲ ।
ପ୍ରୟାଗ କହଇ, "ଉର ଲୁଚିଲେଣି ବନେ,
ରାମଙ୍କୁ ଦେଖିଲି ସେ ତ ସହସ୍ରକେ ଜଣେ !
ହଉ "ନାନା, ମୃଗ ଦେଖି, ଦିଶଇ ସୁନ୍ଦର,
ସିଂହ, ବାଘ ଦେଖି ଦେହ ହେବ ଥର ଥର ।"
ଶିରେ ଧରି ଯାଏ ଫେରି ଖଟୋଲି ମୂଟୁଲି,
ନାରୀ ଝୁଣୋଇଙ୍କୁ ବାଟେ ବରଷଇ ଗାଳି ।

ଅଯୋଧ୍ୟାକୁ ଆସି ଫେରି — ସେହି ତରୁତଳେ,
ଖଟୁଲି ମୁଚୁଳି ପାତି — ବସେ ରଥପରେ ।
"ଏଠି ହୋଇଥିଲି ନାମି, — ଭଉଣୋଇ ସାକ୍ଷାତ,
ଏଇଠି ବସି ଦେଖିବି — ଫେରି ଆସିବେ ତ !
ବସି ବସି ସେଥି କେବେ — ରାଗରେ ଅଧୀର,
ଭଉଣୋଇଙ୍କ ଲାଗି ଗାଳି — ଦିଏ ଅନବାର ।
ଅନେକ ପ୍ରୟାଗ ପ୍ରାଣେ — ନୋହିଗଲା ବଳି,
ନାମି ଭଉଣୋଇଙ୍କୁ ଝୁରି — ଛାଡ଼ିଲେ ବୋବାଳି ।
କାନ୍ଦି କାନ୍ଦି ଖଟୁଲିରୁ — ଗଲେ ତଳେ ପଡ଼ି,
ଶରୀର-ପଞ୍ଜର ଛାଡ଼ି — ପକ୍ଷୀ ଗଲା ଉଡ଼ି ।
ଦେଖୁଛନ୍ତି ଜନେ ନଭୁଁ — ଖସଇ ବିମାନ,
ଜ୍ୟୋତିପୁଞ୍ଜ ନୁହେ ଦେଖି, — ଝଲସେ ନୟନ ।
ପୁଷ୍ପକ ବିମାନ ଆସି — ଛୁଇଁଲା ଧରଣୀ,
ବସିଛନ୍ତି ରଘୁପତି, — ଜନକନନ୍ଦିନୀ ।
ପ୍ରୟାଗ ଦାଏ ଚଢ଼ିଲେ — ଦିବ୍ୟ ରୂପ ଧରି,
ହରିବୋଲ ପଡ଼େ, ଶୁଭେ — ସୀତାରାମ ହରି ।
ଯାଅ ହେ ପରମହଂସ, — ଯାଇ ସ୍ୱର୍ଗେ ବସ,
ଝୁରୁଥିବୁ କାଳ କାଳ, — ଥିବ ଶୁଭ୍ର ଯଶ ।

× × × ×

ଜୟ ଜୟ ଦୀନବନ୍ଧୁ — ଭକତ-ସଖାଳି,
ଜୟ ରଘୁପତି ଜୟ — ଜନକଦୁଲାଳୀ !
ଚରଣର ଦାସ କରି, — ପିନ୍ଧାଏ ପାଦୁକା,
ଛୁଟିଯାଉ କର୍ମ-ବନ୍ଧ, — ଯାଉ ଭବ-ଦକା ।

—o—

# ଲଙ୍କା-ଗମନ

ରାଜନଗର ତା ନାମ, ଗ୍ରାମ ଶ୍ରେଷ୍ଠ ଅତି,
ଅଛି ବହୁ କାନ୍ୟକୁବ୍ଜ- ବ୍ରାହ୍ମଣବସତି ।
ବାଳକ ରାମଙ୍କ ଜନ୍ମ ବ୍ରାହ୍ମଣର ଘରେ,
ମାତା ପିତା ଧର୍ମଶୀଳ, ଭକତି ପ୍ରାଣରେ ।
ଅଳପ ବୟସେ ଗଲେ, ପିତାମାତା ମରି,
ନିଃସହାୟ ଶିଶୁ କିଏ ରଖିବ ସମ୍ଭାଳି ?
ବିଧବା ଭଉଣୀ ଏକ ଥିଲି ପାଖ ଗ୍ରାମେ,
କୋଳେ ନେଲି ଶିଶୁ ଭ୍ରାତା ପାଳିଲି ଯତନେ ।
ଗ୍ରାମରେ ପଣ୍ଡିତ ଥିଲେ କରି ପାଠଶାଳା,
ଭାଇକୁ ପଢ଼ାଏ ତହିଁ ବିଧବା ସୁଶୀଳା ।
ସୀତା-ରାମଚରଣରେ ନାରୀର ଭକତି,
ସୀତାରାମ ରଟି ରଟି କାଳଯାଏ ବିତି ।
ଭଗିନୀ ଭକତି କ୍ରମେ ଭାଇରେ ପଶିଲା,
ବାଳକରାମରେ ରାମ ମୋହ ଚହଟିଲା !
ସଂସ୍କୃତ ପଢ଼ି ସେ କ୍ରମେ ଅରଜିଲା ଜ୍ଞାନ,
ଯଜ୍ଞ ଉପବୀତ ନେଇ ହୋଇଲା ବ୍ରାହ୍ମଣ ।
ଭଉଣୀ ଭାଇକୁ ଛାଡ଼ି ସରଗେ ଚଳିଲେ,
ଗୋଟି ଗୋଟି କରି ବନ୍ଧୁ ଡୋର କାଟିଦେଲେ !
ପିତାମାତା ଥିଲେ ସିନା ବିବାହ ବିଚାର,
ସଂସାର ପ୍ରତି ବିରକ୍ତ ବାଳକରାମର ।
ନିଷ୍ଠାପର ବ୍ରହ୍ମଚାରୀ, ସୀତାରାମେ ରତି,
ନୀରସ ସଂସାର-ସୁଖେ କିପାଁ ଯିବ ମତି ?

ଶରୀର ସୁଢ଼ଳ, ରୂପ    ଦିଶେ ତୋଫା ଗୋରା,
ଦୀର୍ଘଶାଳ ତନୁ ତହିଁ    ଯଉବନ ଭରା ।
ଉଜ୍ଜ୍ୱଳ ନୟନ ଜ୍ୟୋତି    ଦୀର୍ଘ, ତୀକ୍ଷ୍ଣ ନାସା,
ହୃଦୟେ ପ୍ରାକ୍ତନ ଜନ୍ମ    ସାଧନ, ତପସ୍ୟା ।
ରଜନୀର ଶେଷ ଯାମୁଁ    ସୀତାରାମ ଧ୍ୟାନ,
ଦଣ୍ଡା ଦୁଇ ପରେ ସ୍ନାନ,    ପୂଜନ, ବନ୍ଦନ ।
ପ୍ରତ୍ୟହ ସ୍ୱହସ୍ତ-ପାକ    ହବିଷ୍ୟଭୋଜନ,
ଶ୍ରୀରାମରେ ପୂର୍ଣ୍ଣପ୍ରାଣେ    କରି ସମର୍ପଣ ।
ଅଖଣ୍ଡ ଭଜନ ଘୃଲେ    ନିବଦ୍ଧ କୁଟୀରେ,
ଦିନ ଶେଷ ଦୁଇ ଘଡ଼ି    କାଟନ୍ତି ବାହାରେ ।
ଲାଗେ ପରମାର୍ଥ ଚର୍ଚ୍ଚା    ଗ୍ରାମ ଲୋକମେଳେ,
ଭଜନ ନିଷ୍ଠାହିଁ ସାର,    ବୁଝାନ୍ତି କୁଶଳେ ।
ସନ୍ଧ୍ୟା ହେଲେ ଜପ ତପ    ଭଜନ, କୀର୍ତ୍ତନ,
ଅଷ୍ଟପ୍ରହର ବଦନେ    ନାମ ଉଚ୍ଚାରଣ ।
ଗୁଣ ତ ନ ପାରେ ଲୁଚି,    ଲୋକେ ହୁଏ ଜଣା ।
ଖଣ୍ଡମଣ୍ଡଳରେ ହେଲେ    ସାଧୁ ବୋଲି ଗଣା ।
ଦିନ ଯାଉଅଛି ବୁଡ଼ି    କୁଡ଼ିଆ ଦୁଆରେ,
ବସିଛନ୍ତି ସାଧୁ, ମୁଖୁଁ    ରାମ ନାମ ସ୍ଫୁରେ ।
ଆସିଲେ ସୁନ୍ଦରୀ କାହୁଁ    ଭୂଷଣମଣ୍ଡିତ,
ପୀତପଟ୍ଟେ ଗୌର ତନୁ    ଅତି ସୁଶୋଭିତ ।
ବୟସ ଅଳପ ପୁଟି,    ଦିଶେ ଯଉବନ,
ଫୁଲ ଫଳ ଥୋଇ ପାଦେ    କରନ୍ତି ପ୍ରଣାମ ।
କହନ୍ତି, "ଏ ଅଭାଗିନୀ    ନିକଟରେ ଗ୍ରାମ,
ଜମିଦାର ପୁତ୍ରବଧୂ,    ଶୁଣି ତବ ନାମ ।

ଅଛିଅଛୁ ଆଶା କରି, ଶୂନ୍ୟ କୋଳ ତାର,
ପୂର୍ଣ୍ଣ ହେଉ, ଅଙ୍କ ହେଉ, ଗୋଟିଏ କୁମର।
ପୂଜୁଥିବ ପଦ ନିତି ତାକ ଅଶ୍ରୁ ନୀର,
ଜଗତେ ବାବାଙ୍କ ହେବ, ଝରିତ ବିସ୍ତାର।"
ଘୋର ସନ୍ତର୍ପଣେ ସାଧୁ ମୁଖୁଁ ଫୁଟେ ବାଣୀ,
"ଏ ତୋ ବଡ଼ ସାହସିକ କାମ ଲୋ ଭଉଣୀ !
ଅବଳା ତୁ, କେହ୍ନ ତୋର ସାହା ନାହିଁ ପଥେ,
ଅନ୍ୟ ପୁରୁଷ ପାଖକୁ ଆସିଲୁ କେମନ୍ତେ !
ଏକାକୀ ଆସୁଛୁ ଦାଣ୍ଡେ, କୁଳବଧୂ ତୁହି,
ଲଜ୍ଜା ମର୍ଯ୍ୟାଦାର ଶିରେ ହେଲେ ପଦ ଦେଇ।
ଜାଣୁ ନା ମହାତ୍ମା ବେଶେ କେତେ ସ୍ୱାର୍ଥପର,
ଲୁଟନ୍ତି, ଧନ, ଜୀବନ, ଇଜ୍ଜତ ପାମର।
ମନ୍ତ୍ରବଳ, ତପବଳ, ମିଛି କାହିଁ ମୋର ?
ଆଶୀର୍ବାଦ ଡାଳିବାକୁ ନାହିଁ ଅଧିକାର।
ଏ ତ ଅତି ଅକିଞ୍ଚନ ଦରିଦ୍ର ବ୍ରାହ୍ମଣ,
ପ୍ରଭୁ ନାମ ନେଇ, ହୁଏ ଭରଣପୋଷଣ।
ଏକ ଲଜ୍ଜା ! ସତେ ଜନେ ଭାବନ୍ତି ଜଗତେ,
ମହାତ୍ମା, ପୁଣ୍ୟାତ୍ମା, ଭକ୍ତ ବୋଲଣ କେମନ୍ତେ।
ଅତି ଜ୍ଞାନହୀନ ନାହିଁ ଯୋଗ୍ୟତା ଯାହାର,
ଧରିବ ମସ୍ତକେ ପଦ- ରେଣୁ ମହାତ୍ମାର।
ଭଗିନୀ ତୁ ଯାଅ ଚଳି ଘଣ୍ଟିରେ ବାହାରେ,
ରହିବା ସୁନ୍ଦର ନୁହେ, କେବେ ରମଣୀରେ।
ଭଗବାନେ ଦିଅ ମନ କର ତୁ ପ୍ରାର୍ଥନା,
ଦେବେ ଯା ମଙ୍ଗଳମୟ, ମଙ୍ଗଳ ସେ ସିନା !"

ଫେରଇ ରମଣୀ ଗୃହେ ନ ପୂରେ ତା ଆଶା,
ସାଧୁ କହେ "ଭଗିନୀ ତୋ ଦୁଇ କୋଣେ ବସା !
ଅନ୍ଧାର ତ ଆସେ ମାଡ଼ି ରହ ସାବଧାନ,
ସଙ୍କଟ ପଡ଼ିଲେ ଡାକେ ଡାକ ରାମ ନାମ ।
ନାମ କରେ ହେଲେ ଭବ- ସମୁଦ୍ରରୁ ପାର,
ସଂସାର-ସଙ୍କଟ ଘୋର, ତାରେ ନାହିଁ ଡର ।"
ରମଣୀର ବେଶଭୂଷା ହେମ ଅଲଙ୍କାର,
ଦେଖି ଆଗୁଁ ଧରିଥିଲେ ପିଛୁ କେତେ ଚୋର ।
ଖଣ୍ଡଦୂରେ ରମଣୀକୁ ଘେରିଲେ ଚାମରେ,
'ରଖ ସୀତାରାମ' ! ବାଳା ଆର୍ତ୍ତେ ନାଦ କରେ ।
ରମଣୀ ଦେଖଇ ଶ୍ୟାମ- ସୁନ୍ଦର ମୂରତି,
ସଶସ୍ତ୍ର ବୀର ଯୁବକ ଧାଇଁ ଆସୁଛନ୍ତି ।
ତାଙ୍କ ପଛରେ ବାଳକ- 'ରାମ'ନ୍ତନ୍ତି ଧାଇଁ,
'ଭୟ ନାହିଁ ! ଭୟ ନାହିଁ !' ଉଚ୍ଚସ୍ୱରେ କହି ।
ପଳାଅନ୍ତି ପ୍ରାଣ ନେଇ ଦସ୍ୟୁ ଏଣେ ତେଣେ,
ଗୋଡ଼ାଇ ପିଟନ୍ତି ବୀର ଧରି ଜଣେ ଜଣେ ।
ଦସ୍ୟୁଭୟ ଗଲା; ଦୁଇ ତନୁ ଅନ୍ତର୍ହିତ,
ରମଣୀ ଭାବଇ ମନେ, 'ସ୍ୱପ୍ନ ନୁହେ ଏତ !'
ମିଳିଲେ ଆପଣା ଜନ ନେଲେ ସୁଖେ ଘରେ,
ଆଶ୍ଚର୍ଯ୍ୟ ଚକିତ ବାଳା ମଣେ ଧନ୍ୟ ତାରେ ।
"କି ହେବ ମୋର ନନ୍ଦନ ? ନିଜେ ଘନଶ୍ୟାମ
କି ଭାଗ୍ୟେ ଦେଲେ ସେ ଦେଖା ! ସେ ବାଳକରାମ
ନୁହନ୍ତି ସାମାନ୍ୟ ଯତି ! ନିସ୍ପୃହତା ଶାନ୍ତି,
ନିରଭିମାନର ସେ ଯେ ଜୀବନ୍ତ ମୂରତି !

ଏ ସବୁ ବାଳକ ରାମ କରୁଣାର ଖେଳ;
କ୍ଷଣ ସାଧୁ ସଙ୍ଗ ଲଭ ସୁଧାମୟ ଫଳ !"
ଭଜନ ଧରିଲି ବାଳା, ଭଗବାନେ ରଟି
ବଢ଼ିଲି ତା ଦିନୁଦିନ, ଉଚ୍ଛଳମ ସ୍ମୃତି ।
ଲଭିଲି ସେ ବାରମ୍ବାର ଶ୍ରୀରାମଦର୍ଶନ,
ଯୋଗୀର ଅଲଭ୍ୟ ଗତି ରମଣୀରତନ ।
ଥରେ ଅଯୋଧ୍ୟା ଯିବାକୁ ଇଚ୍ଛା ବାବାଙ୍କର,
ରାମନବମୀ ଦିନରେ, ଦର୍ଶନ ବଡ଼ର
ହେଲା; କିନ୍ତୁ ଅଯୋଧ୍ୟା ତ ତିନି ଶତ କୋଶ,
ରାମନବମୀ ମଧ୍ୟରେ ତିନୋଟି ଦିବସ !,
ନାହିଁ ଚିନ୍ତା, କରିବେ ସେ ମଙ୍ଗଳ ଦର୍ଶନ,
ରାମନବମୀ ଦିନରେ ସାହା ଭଗବାନ !
ଛାଡ଼ିଲେ ରାଜନଗର, ପଥେ ହେଲା ରାତି,
ବିମୋହନ ବଟବୃକ୍ଷ, ସର ଦେଖେ ଯତି ।
ସରୋବରେ ସ୍ନାନ ସନ୍ଧ୍ୟା ଜପ ତପ ସାରି,
ବଟତଳେ ଧ୍ୟାନେ ରତ ଦୃଢ଼ାସନ ଧରି ।
ହୃଦେ ଦିଶେ ଶ୍ୟାମଦ୍ୟୁତି ଉଜ୍ଜ୍ୱଳ ମୂରତି,
ରାମଙ୍କର ପିଇ ରୂପ ମାଧୁରୀ ସେ ଯତି
ମହାସମାଧିରେ ଲୀନ; ଗଲା ଦୁଇ ଦିନ,
ପ୍ରଭାତେ ଲୋଚନ ଖୋଲେ କରନ୍ତି ଦର୍ଶନ ।
ରଘୁମଣି ରାମଚନ୍ଦ୍ର ଅଗ୍ରେ ଶୋଭାବନ
ମୃଦୁହାସେ, ଅଯୋଧ୍ୟା ସେ ରାମଜନ୍ମ ସ୍ଥାନ ।
ନିକଟେ ସରଯୂ ରଙ୍ଗେ ଯାଉଅଛି ବହି,
ବିଶାଳ ଅଶ୍ୱତ୍ଥତଳେ ବସିଛନ୍ତି ସେହି ।

ମୁଗ୍ଧ ସେ ବାଳକରାମ,      ତନୁ କଣ୍ଟକିତ,
ମୁଖୁଁ ନ ସ୍ଫୁରଇ ବାଣୀ,      ପ୍ରେମାଶ୍ରୁ ଗଳିତ ।
ଧାଏଁ ପ୍ରେମୋନ୍ମାଦେ ଯତି      କୋଶଳେନ୍ଦ୍ର ପୁରେ,
ଦେଖିବେ ଜନ୍ମ ଉତ୍ସବ      ଦେବତାମନ୍ଦିରେ ।
ସୁସ୍ପଷ୍ଟ ଦେଖନ୍ତି ଯତି      ଶ୍ରୀରାମ ପୁରତେ,
ନୀଳ ନବଘନ ଶ୍ୟାମ      ସ୍ୱଚ୍ଛ ଜ୍ୟୋତି-ସ୍ରୋତେ ।
ମନ୍ଦହାସେ ବୁଲିଛନ୍ତି,      ଧଇଲେ ମନ୍ଦିର,
ମନ୍ଦିର ଧରନ୍ତେ ରାମ      ହୋଇଲେ ଅନ୍ତର ।
ଦେଖନ୍ତି ବାଳକରାମ      ଜନ୍ମୋତ୍ସବ ବେଶ,
ଜନକନନ୍ଦିନୀ ସହ      ପ୍ରଭୁ କୋଶଳେଶ ।
ଲକ୍ଷ୍ମଣ, ଭରତଲଲା      ରହିଛନ୍ତି ସଙ୍ଗେ,
ଶତ୍ରୁଘ୍ନ ଚାମର ଧରି      ଢାଳୁଛନ୍ତି ରଙ୍ଗେ ।
ଦୃଷ୍ଟ ଜନ୍ମୋତ୍ସବ ବେଶ      ମଙ୍ଗଳ-ଦର୍ଶନ,
କରୁଛନ୍ତି ପୁରବାସୀ      ଜାନପଦ ଜନ ।
ନାଚିଲେ ରସ ଭାବାବେଶେ      ପ୍ରେମାଶ୍ରୁ ବଦନେ,
ହର୍ଷେ ଯୋଗ ଦେଲେ ସଙ୍ଗେ      ଚୁଣ୍ଡି ଯେତେ ଜନେ ।
ଫୁଟେ ତୁଣ୍ଡୁ ରାମନାମ      ମଧୁର ମୋହନ,
ମୁଖେ ସୁବିମଳ ଜ୍ୟୋତି,      ପ୍ରେମାଶ୍ରୁ ଲୋଚନ
ହେଲେ ସର୍ବେ ଗୃହୁଁ ଗୃହୁଁ;      ସୁଧା ସ୍ରୋତ ଖେଳେ;
ମନ୍ଦିରପ୍ରାଙ୍ଗଣ ଧରି      ଉନ୍ମାଦେ ନାଚିଲେ ।
ଉନ୍ମତ୍ତ ବାଳକରାମ      ଗଲେ ତଳେ ପଡ଼ି
ବ୍ରହ୍ମରନ୍ଧ୍ର ଫାଟି ଯାଏ      ପ୍ରାଣ-ପକ୍ଷୀ ଉଡ଼ି ।
ଯାଅ ହେ ବାଳକରାମ      ହେ ଚିରକୁମାର !
ତୁମ ଧର୍ମପନ୍ଥା ଧରୁ,      ତରୁ ଏ ସଂସାର ।

× × ×

ଜୟ ଜୟ ସୀତାରାମ, ଜୟ ରଘୁପତି,
ଜୟ ଜୟ କୃପାସିନ୍ଧୁ ପଦେ ରଖ ମତି ।
ସାଧୁସଙ୍ଗ ଦିଅ ସୁଖେ ଭବୁ କର ପାର,
ଦୁରନ୍ତ ରୋଷ ଭୟେ ଶରଣ ଅସ୍ତ୍ରର ।



# ବନପଥେ

ବଙ୍ଗଳାରେ କୃଷ୍ଣଚନ୍ଦ୍ର ପ୍ରସିଦ୍ଧ ନୃପତି,
ତାଙ୍କ ରାଜ୍ୟ ଗଙ୍ଗାତଟେ କରନ୍ତି ବସତି ।
ଶୁଦ୍ଧଚିତ୍ତ ଅମାୟିକ ଦ୍ୱିଜ ନାରାୟଣ,
ଘରେ ବହୁ ଧନ ସତ, ମହତ, ବଦ୍ୱାନ ।
ବ୍ୟବହାର ନମ୍ର, ସାଧୁ, ବଚନ ମଧୁର
ଲକ୍ଷ୍ମୀ ଧନକପଣ, ମଦ, ଅହଂକାର ।
ଧନରେ ଦ୍ୱିଜର ଟିକେ ନ ଥାଏ ଆସକ୍ତି,
ମର୍ଯ୍ୟାଦା ପୁରୁଷୋତ୍ତମେ ରାମେ ସଦା ରତି ।
ପତ୍ନୀ ସତୀ, ଭକ୍ତିମତୀ, ସୁଶୀଳା ମାଳତୀ,
ପତି ଚରଣରେ ଥାଏ ସଦା ଶୁଦ୍ଧ ମତି ।
ବିନୟ ବଚନେ ତାର ବଶ ସର୍ବଜନ,
ସାନ ବଡ଼ ନାହିଁ ଭେଦ, ସରବେ ସମାନ ।
କୋଳକୁ ସନ୍ତାନ ନାହିଁ, ଦୁଃଖ ତାର ମନେ;
ସେ ଅଭାବ ନାରାୟଣ ତିଳେ ହେଁ ନ ଘେନେ ।
ଭାବେ, କାହା ଭାଗ୍ୟେ ମିଳେ ସୁଯୋଗ୍ୟ କୁମର ?
କୁମର କୁହନ୍ତି ବହୁ, ଭଣ୍ଡିକଣ୍ଠା ଟଗର ।

ପ୍ରକୃତ ନନ୍ଦନ ବୃଦ୍ଧ କାଳେ ହୁଏ ସାହା,
ଅନ୍ତରର ଦୁଃଖ ବୁଝେ, କରେ ଆହା ଆ ହା !
ନଶ୍ୱର ଜୀବନ, ଗଲେ ଅକାଳେ ନନ୍ଦନ,
ମରଣୁ ବଳେ ସେ ଦୁଃଖ, ଜୀବନ୍ତ ଦହନ ।
ସୁତ ସୁତା ନାହିଁ ଦ୍ୱିଜ ଭାବେ, ଭଲ କଥା,
ମଙ୍ଗଳମୟଙ୍କ ଇଚ୍ଛା ମଙ୍ଗଳ ସର୍ବଥା ।
ପତିପତ୍ନୀ ଦୁହେଁ ଦିନେ କରନ୍ତି ବିଚାର,
ବୟସ ଖସିଲା ଚାଲ ଛେଡ଼ିବା ସଂସାର ।
ପୁଣ୍ୟକ୍ଷେତ୍ର ଅଯୋଧ୍ୟାରେ ବିରଚି କୁଟୀର,
ଭଜନେ, କୀର୍ତ୍ତନେ କଟାଇବା ଶେଷକାଳ ।
ନାମ ଜପୁ ଜପୁ ଶେଷେ ପଡ଼ିବା ତ ଝଳ,
ନାହିଁ ଉଚ୍ଛନ୍ନର ଗତି, ସେଥିରୁ ହିଁ ବଳ ।
ସ୍ଥାବର ସମ୍ପତ୍ତି ଧନ ଜନେ ବାଣ୍ଟିଲେ;
ସଞ୍ଚିତ ଯା ଥିଲା ଧନ ସଙ୍ଗରେ ନେଇଲେ ।
ଲୁଗାପଟା ଆଉ ଗିନା ପାନପାତ୍ର ଆଦି,
ଗୁଡ଼ାଇ ବଳଦପୃଷ୍ଠେ ଧରିଲେ ସମ୍ପାଦି ।
ରାମନାମ ଜପି ଗଲେ ତୀର୍ଥବାସ କରି,
କରନ୍ତି ବିଶ୍ରାମ ପଥେ ଧର୍ମଶାଳା ଧରି ।
ଚିତ୍ରକୂଟେ ପହଞ୍ଚିଲେ ଭକତ-ଦମ୍ପତି,
ତୀର୍ଥସ୍ଥାନ ବୁଲି ଦେଖି ପ୍ରସନ୍ନ ସେ ଅତି ।
ସତସଙ୍ଗ, ସାଧୁସେବା, ଭଜନ କୀର୍ତ୍ତନ,
ଦାନପୁଣ୍ୟେ ପତି-ପତ୍ନୀ ନେଲେ କେତେ ଦିନ ।
ଚିତ୍ରକୂଟୁଁ ଅଯୋଧ୍ୟାକୁ, ଅଛି ଦୁଇ ପଥ,
ବନପଥେ ଦୁହେଁ ଯିବେ କଲେ ମନୋରଥ ।

ଅଯୋଧ୍ୟାରୁ ରାମଚନ୍ଦ୍ର  ସିଧା ପଥ ଛାଡ଼ି,
ଆସିଥିଲେ ବନେ ବନେ  କଣ୍ଟା ଝଣ୍ଟା ମାଡ଼ି ।
ପ୍ରଭୁଙ୍କର ବନକଷ୍ଟ  ଅଙ୍ଗେ ଅନୁଭବ,
କରିବେ କଳ୍ପିଲେ, ଦୁଇ  ଭକତଙ୍କ ଭାବ ।
ବନବାଟ ଦୁଇ ଜଣେ  ନ ଥିଲା ତ ଜଣା,
ଘୋର ବନସ୍ତେ ମିଳିଲେ  ହୋଇ ବାଟବଣା ।
ନିରନ୍ତର ନାମଜପ,  ନାହିଁ ଆନ ସାହା;
ଭରସା ମାତର କରି-  ଛନ୍ତି ରଘୁବାହା ।
ଝରଣା ପଡ଼ିଲେ ବାଟେ  ପକାନ୍ତି ସେ ଡେରା;
ବଳଦ ପାଆନ୍ତି  ଭଲ ତୃଣପତ୍ର ଚରା ।
ଦୁର୍ଗମ ଜଙ୍ଗଲ, ଦୁଷ୍ଟ  ଜନ୍ତୁ ଛନ୍ତି ପୂରି,
ଲୋକ ଚଳାଚଳ ନାହିଁ  ନୁହେ ପଥ ବାରି ।
ଯାଉଁ ଯାଉଁ ସମ୍ମୁଖରେ  ଭିଲ୍ଲ ଗ୍ରାମ ଦିଶେ,
ପଥର ବୁଝିଲେ ରାହା  ଭାସନ୍ତି ହରଷେ ।
ଦୁଇ ଚୋର ଭିଲ୍ଲ ଆସି  ଯାତ୍ରୀଙ୍କୁ ଦେଖିଣ,
ମନେ ମନେ ବିଚାରନ୍ତି,  'ଧନିକ ଏ ଜନ !
ସଙ୍ଗରେ ଧନ କାଞ୍ଚନ  ଅଛି ବହୁ ରହି,
ବୁହେଣି ବଳଦ କଷ୍ଟେ  ପାରୁଛନ୍ତି ବହି ।
ଭାଗ୍ୟ ଆମର ଏ ଆସି  ନିଜେ ଦେଲେ ଧରା ।'
ପଚାରନ୍ତି 'ଯାଉଅଛ  ତୀର୍ଥ କରି ପରା !'
ସରଳ ବ୍ରାହ୍ମଣ, ନାହିଁ  କପଟ ବେଭାର,
କହଇ, 'ଅଯୋଧ୍ୟା ଯିବୁ  ଅଛି ତ ବିଚାର ।'
କହିଲେ ସେ, 'ଯିବୁ ବିପ୍ର !  ଆମେ ବି ଅଯୋଧ୍ୟା,
ସଙ୍ଗତେ ଆମର ଯିବ,  ଆଉ କିବା ବାଧା ?''

ଭୁଲାଇଣ ବ୍ରାହ୍ମଣକୁ ଦସ୍ୟୁ ସଙ୍ଗେ ନେଲେ,
ଘୋର ଜଙ୍ଗଲ ମଧ୍ୟରେ ପାଇଁ ପହଞ୍ଚିଲେ ।
ପିଟନ୍ତି ଦ୍ୱିଜଙ୍କୁ ଦସ୍ୟୁ ଦ୍ୱିଜ ଅଚେତନ,
ପତିଦଶା ଦେଖି ପତ୍ନୀ ହରିଇଲା ଜ୍ଞାନ ।
ନାରୀପୂଣେ ନେଇ ଦସ୍ୟୁ କ୍ଷଣାରେ ଫିଙ୍ଗିଲେ,
ହାତ ଗୋଡ଼ ବାନ୍ଧି ବକ୍ଷେ ପଥର ଲଦିଲେ ।
ମନ୍ଦ ଦୋଳ ଗ୍ରୁଡ଼ ଆସି ଘେରନ୍ତି ମାଳତୀ,
ମୂର୍ଚ୍ଛିତା ହୋଇ ପଡ଼ିଛୁ, ସୁନ୍ଦରୀ ସେ ଅଛି ।
ସୌନ୍ଦର୍ଯ୍ୟେ ଲଲସା ଦସ୍ୟୁ ପ୍ରାଣେ ଉଠେ ଜଳି !
ଟାଣନ୍ତି ସେ ବସ୍ତ୍ର ଧରି, ଜାଗି ଉଠେ ବାଳୀ ।
ଦସ୍ୟୁଙ୍କର ବ୍ୟବହାରେ, ଘୃଣା ରାଗ ଜଳେ,
କି କରିବ ଅବଳା ସେ ! ପରାଣ ବିକଳେ ।
ସ୍ତୁତି କରେ, "ଦୀନବନ୍ଧୁ, ଭକତ-ବତ୍ସଳ !
ଭକତ-ଲାଞ୍ଛନା ଦେଖି, ହେଲ କି ପଥର !
ତୋର ପଦେ ପତିପତ୍ନୀ ବିକଳେ ଚରଣ,
ତୁହି ତ ଆଶା ଭରସା; ତୁହି ତ ଶରଣ ।
ସଭା ମଧ୍ୟେ କୃଷ୍ଣା ଡାକେ କୋଟି ବସ୍ତ୍ର ଦେଲ,
ସତୀର ଲାଞ୍ଛନା ତଳେ ସହି ନ ପାରିଲ ।
ଆଜ ଏ ପାମରେ ବସ୍ତ୍ର ଟାଣନ୍ତି କି ଇଚ୍ଛି ?
ତୁ ତ ଅନ୍ତର୍ଯ୍ୟାମୀ, ନାହିଁ ଅଜଣା ତ କିଛି ?
ପାମରେ ପିଟିଲେ ପତି ଅଛନ୍ତି କି ନାହିଁ,
ଫାଟିଯାଏ ଛାତି, ପ୍ରାଣ ନ ଯାଏ କପାଇଁ ?
ଏଡ଼େ ବଡ଼ ଦୁଃଖ ଧରି, ଯେବେ ଯିବୁ ସରି,
ଅ.ରତ-ଭଞ୍ଜନ-ବାନା ବହିବୁ କିପରି ?

ଆସ ଆସ ଦୀନବନ୍ଧୁ ଶରଣରକ୍ଷଣ !
ଶରଣରକ୍ଷଣ ନାମ ନୋହୁ ଅକାରଣ ।
ବୁକ ଦୋହଲିଗଲା ଆଖି ତନ୍ଦ୍ରାସୁ ସରଣ,
ଅଶ୍ୱଟାପୁ ଶବ୍ଦେ ସଖି ଫିଟାଏ ଲୋଚନ ।
ଦେଖଇ ଉଜ୍ଜ୍ୱଳ ଶ୍ୟାମ ରମ୍ୟ ଯୋଦ୍ଧୃବର,
ଶ୍ୱେତଅଶ୍ୱ ପୃଷ୍ଠେ ଧାଇଁ ଆସୁଛନ୍ତି ସତ୍ୱର ।
ଶିରେ ସୁବର୍ଣ୍ଣ-ମୁକୁଟ, କୁଣ୍ଡଳ ଶ୍ରବଣେ,
ସର୍ବାଙ୍ଗ ଝଟକ ଉଠେ ନାନା ଆଭରଣେ ।
କଟିତଟେ ତଲବାର ଝୁଲେ ଲମ୍ବମାନ,
ପୃଷ୍ଠରେ ବିଶାଳ ଧନୁ, ତୂଣ ପୂରି ବାଣ ।
କୃତାନ୍ତ ସମାନ ଦେଖି ଘନଶ୍ୟାମ କାୟ,
ପଳାଅନ୍ତି ଦସ୍ୟୁଗଣ ହୋଇଣ ଅଥୟ ।
ଭୟେ ତଳେ ପଡ଼ି କାର ମୁଣ୍ଡ ଯାଏ ଫାଟି,
ଭାଙ୍ଗିଯାଏ ଗୋଡ଼ କାର ପଥେ ଶିଳା ଝୁଣ୍ଟି ।
ପଡ଼ି ଦାନ୍ତପାଟି ଝଡ଼େ, କାର ଭାଙ୍ଗେ ହାତ,
ଜୀବନ ନେଇ ପଳାନ୍ତି ଦସ୍ୟୁ ଇତଃସ୍ତତ ।
ମାଳତୀ ପାଖକୁ ଆସି ପ୍ରଚ୍ଛାଏ ଯୁବକ,
ଅବଳାର କଷ୍ଟେ ଗଡ଼ି ଆସଇ ଲୋତକ !
ଯୁବକ—କିଏ ସେ ମା ତୁମ୍ଭ, କାହିଁ ଆସି ଘୋରବନେ !
ପୁରୁଷ ଲୋକ କି ସଙ୍ଗେ କେହି ନାହିଁ ଜଣେ ?
ଦେଖିଲି ଏମାନେ ଟାଣୁ— ଥିଲେ ବସ୍ତ୍ର ଧରି,
ମୋତେ ଦେଖି ପ୍ରାଣ ନେଇ ଗଲେ ଅପସରି ।
ନଦୀଘ-ତାପିତ ଧରା ପାଇଲା କି ବାରି,
ମୃତପ୍ରାଣେ ଢାଳିଦେଲା କେ ଅମୃତ ତୋ—

ଘରେ କରୁଣା ମିଶା ମଧୁର ବଚନ,
ଅନୁକମ୍ପାଭର ଅଶ୍ରୁ— ପ୍ଲାବିତ ଲୋଚନ,
ନୀଳନବଘନ ଶ୍ୟାମ ଅପୂର୍ବ ମୂରତି,
ପ୍ରାଣ ଫେରାଇଲା ଅଙ୍ଗେ ଗୃହ୍ଣି ରହେ ସତୀ ।
ଗୃହ୍ଣି ରହେ, ନାହିଁ ଚେତା, ନ ଫୁଟେ ବଚନ,
କହେ ରୂପଗଣି ! ବାଳା ଚନ୍ଦ୍ରମୁ-ପରାଣ ।
ବହୁ ଷଣେ କହେ ବାବୁ; ଛାଡ଼ିନାହିଁ ତୋତେ,
ଯେବା ହୁଅ ତୁହି ମୋର ହୁଅଇ ପରତେ,
ଘୋର ଦୁଃଖ ବୃଷ୍ଟି ପେଷି— ଛନ୍ତ୍ର ରଘୁପତି,
କୋମଳ ପରାଣ ସତେ ହେଲା ତ କରତ !
ପତି ମାର କାହିଁ ବନେ ଫିଙ୍ଗିଲେ ପାମରେ,
କ କରିବ ମୁଁ ଅବାଳା ସାହା ହୁଅ ମୋରେ ।
ତୁହି ମୋ ଧରମ ଭାଇ, ଧରେ ତୋର ହାତ,
ଶେଷକାଳେ ଶ୍ମଶାନରେ ସାହା ମୋର ତୁ ତ !
ପତିଶବ ଖୋଜ ବନେ ଚିତା ଦେବୁ ଜାଳ,
'ଜୟ ରଘୁପତି କହି ଅଙ୍ଗ ଦେବି ଢାଳ ।
ଶମିବ ଅନ୍ତର-ଜ୍ୱାଳା ଚିତା ପରେ ଶୋଇ,
ପ୍ରଭୁଙ୍କ ଅପାର କୃପା ମନେ ମନେ ଧ୍ୟାୟୀ !'
ପ୍ରଚ୍ଛନ୍ନ ବହ୍ରୂପ ଦେଖି ରମଣୀ ବଚନେ,
ତରଳି ପଡ଼ିଲା ଅଶ୍ରୁ ଯୁବକ ଲୋଚନେ ।
ଘନଶ୍ୟାମ ମୁଖ ହେଲା ଭାବନା ଜଡ଼ିତ,
ସସ୍ମିତେ କହନ୍ତି କଥା ଶୁଣ ଶୁଣ ମାତ !
''ଲୋଡ଼ନେଲ କଷ୍ଟ ନିଜେ, ନିନ୍ଦୁଛ କପାଳି
ପ୍ରଭୁଙ୍କୁ ? ସୁନ୍ଦର ନୁହେ, ବୃଥା ମାନ ବହି ।

ଅନେ ପ୍ରଭୁ ରଘୁନାଥ, ସଙ୍ଗେ ସାର ଘର,
ଧନୁର୍ଦ୍ଧର ପଟଣ ସାର ତ୍ରିଭୁବନେ ନାହିଁ ।
ଗୁରୁ ବନବାସ କଷ୍ଟ ନ ପାରିଲେ ସହି,
ଛନ୍ଦାଇଲେ ବନପଥ ଅଶ୍ରୁ ଧାର ବାହି ।
ହରିଲା ସହଧର୍ମିଣୀ ସ୍ୱର୍ଣ୍ଣବାଳୁମର,
ଶ୍ରୀରାମ ଲକ୍ଷ୍ମଣ କାନ୍ଦ ହୋଇଲେ କାତର ।
ରାବଣ ସଙ୍ଗତେ ଯୁଦ୍ଧ କିବା ସେ କରୁଣ !
ଶତ କ୍ଷତଚିହ୍ନ କଲେ ଶ୍ରୀଅଙ୍ଗ ଭୂଷଣ !
ବନପଥେ କିବା କଷ୍ଟ, କି ସେ ଅନୁଭୂତ,
ଟିକେକ ବହିବ ଅଙ୍ଗେ ଅଛି କା ଶକତି ?
ଭୋଗୁ ନିଜ କର୍ମଫଳ ନିନ୍ଦୁ ଅକାରଣ,
କର୍ମଫଳ ଦାତା ପ୍ରଭୁ ବିପଦ-ଭଞ୍ଜନ !
ସାମାନ୍ୟ ଏ କଷ୍ଟେ ହୁଅ ଏତେ ଅସନ୍ତୁଷ୍ଟ !
ଭାଗ୍ୟକୁ ମୁଁ ଆସୁଥିଲି ବନେ ହେଲା ଭେଟ । –
ଥାଉ, ଥାଉ, ଧର ହାତ, ହେଉଛି ଉଛୁର,
ଯିବା ତ ପତିଙ୍କ ପାଶେ, ସେ ବଡ଼ କାତର ।
ଆସୁଥିଲି ବାଟେ ବାଜୁ— ଥିଲା କର୍ଣ୍ଣେ ବାଣୀ;
"ରକ୍ଷାକର ପ୍ରଭୁ ! ଦୟା କର ରଘୁମଣି !"
ମାଳତୀ ବଢ଼ାଏ ହାତ ଯୁବା କରେ ତୋଳି,
କି ସେ ସ୍ପର୍ଶ ! ଅଙ୍ଗେ ଅଙ୍ଗେ ଖେଳିଲା ବିଜୁଳି !
ଜନ୍ମଜନ୍ମାନ୍ତର ବ୍ୟଥା ଅଙ୍ଗୁ ହେଲା ଦୂର,
ପତିଙ୍କୁ ଦେଖିବ ପ୍ରାଣ ଅତି ହୁଁ ଅଧୀର ।
ଯୁବକ ଆଗରେ ଗଲେ, ପଛରେ ମାଳତୀ,
ମିଳିଲେ ବନସ୍ତେ ଯହିଁ ପଡ଼ିଥିଲେ ପତି ।

ହସ୍ତପଦ ଦୃଢ଼େ ବନ୍ଧା          ଛାତିରେ ପଥର,
ବିଶାଳ ସେ ଶିଳାଖଣ୍ଡ          ଦେଖି ମାଡ଼େ ଡର ।
ଏ ଦୃଶ୍ୟରେ ଦୁଃଖେ ବାଳା          ଛାଡ଼ିଲ ବୋବାଳି,
ଯୁବକ ଫିଙ୍ଗିଲେ ଶିଳା          ଦୁଇ ହସ୍ତେ ଟେକି ।
କାଟିଲେ ବନ୍ଧନ ରଜ୍ଜୁ          ଚୁହୁଁ ଚୁହୁଁ ରଙ୍ଗେ,
ଶ୍ରୀହସ୍ତ ବୁଲାଇ ଦେଲେ          ନାରାୟଣ ଅଙ୍ଗେ ।
କହିଲେ, "ଉଠ ଭକତ !          ଫିଟାଅ ତୋ ଆଖି,
ଆସିଛି ମୁଁ ପଥଯାତ୍ରୀ          ତୁମ ଦୁଃଖ ଦେଖି ।
ସିଧା ପଥ ଛାଡ଼ି ବନ-          ପଥ ନେଲ ବାଛି,
ଭୋଗିଲ କରମ ଫଳ          ଦୁହେଁ କଛି କଛି ।
ଯୁବକର ଶେଷ କଥା          ଶୁଣିଲା କି ନାହିଁ,
ଚକ୍ଷୁ ଫେଡ଼ି ଦେଖେ ବିପ୍ର          ବ୍ରହ୍ମାଣ୍ଡ ଗୋସାଇଁ ।
କମଳଲୋଚନ ବିମ୍ବ—          ଓଷ୍ଠେ ମଧୁ ହାସ,
ଘନ ନୀଳ ଅଙ୍ଗେ ଶୋହେ          ଚାରୁ ପୀତବାସ ।
ଶିରେ ସୁବର୍ଣ୍ଣମୁକୁଟ          ରତନ ଜଡ଼ିତ,
ମକରକୁଣ୍ଡଳ ବେନି          କର୍ଣ୍ଣେ ଦୋଳାୟିତ ।
ବକ୍ଷେ କଉସ୍ତୁଭ ମଣି          ବିଚିତ୍ର ଶୋଭନ,
ପଦରେ ବଳୟ ଯୋଡ଼ି,          ବାହୁରେ କଙ୍କଣ ।
ବୀର ସାଜ, ଶୋହେ ଅଙ୍ଗେ          ଧନୁ ତଲବାର,
ବିପଦଭଞ୍ଜନ ବେଶେ          ଏ ତ ରଘୁବୀର !
'ପ୍ରଭୁ ! ପ୍ରାଣନାଥ !' କହି          ଚରଣକମଳେ,
ଲୋଟନ୍ତି ଭକ୍ତଦମ୍ପତି,          ପ୍ରେମେ ଅଶ୍ରୁ ଗଳେ ।
ଅଶ୍ରୁ ଢାଳି ଧୋଇଦେଲେ,          ଦୁହେଁ ବିଭୁପାଦ,
ଧୋଇଗଲା କୋଟିଜନ୍ମ          ପାପ ପରମାଦ ।

ବନ ପାର କରି ପ୍ରଭୁ      ଦେଖାଇଲେ ପଥ,
ଗୁହୁଁ ଗୁହୁଁ ଗୁରୁମୂର୍ତ୍ତି      ହେଲା ଅନ୍ତର୍ହିତ ।
ଯାତ୍ରୀଏ ଯାଆନ୍ତି ଚଳି      ସିଧା ବାଟ ଧରି,
କିଛି ଦିନେ ପହଞ୍ଚିଲେ      ଅଯୋଧ୍ୟା ନଗରୀ ।
ସରଯୂ କୂଳରେ ଦୁହେଁ      ରଚିଲେ କୁଟୀର,
ସୀତାରାମ ପଦ ପୂଜି      ନେଲେ ଶେଷ କାଳ ।
ଯେତେ ଦିନ ପିଣ୍ଡେ ପ୍ରାଣ      ଥିଲା ଦୁହିଙ୍କର,
ବନପଥ କଷ୍ଟ କେବେ      ନ ଗଲା ପାଶୋରି ।
ଜାନକୀ-ବିରହ-ଦୁଃଖ      ପ୍ରଭୁଙ୍କର ଭଳି,
ନିରନ୍ତର ନୟନରୁ      ଝରୁଥିଲା ବାରି ।

× × × ×

ଜୟ ଜୟ ଦୀନବନ୍ଧୁ !      ଜୟ ଭକ୍ତସଖା !
କି କଠୋର ପ୍ରାଣ ତୋର,      କି ଭୀମ ପରୀକ୍ଷା !



## ନଈ ବାଟ ଦେଲା

ଦିଲ୍ଲୀ ସିଂହାସନେ ଯେବେ      ମୋଗଲ ନୃପତି,
ବସି ସାମ୍ୟଭାବେ କଲେ      ଭାରତେ ରାଜୁତି ।
ସାଧନାରେ ସ୍ୱାଧୀନତା      ପାଇ ଭକ୍ତଗଣ,
ଭାରତରେ ଦେଇଥିଲେ      ମହତ ଦର୍ଶନ ।
ଦକ୍ଷିଣ ମୂଲକେ ଗ୍ରାମ      ରଞ୍ଜନ ତା ନାମ,
ଶାନ୍ତୋବା ଭକତ ତହିଁ      ଲଭିଲେ ଜନମ ।
ସମ୍ପତ୍ତି, ସମ୍ମାନ ଦୁଇ      ରହିଥିଲା ପୂରି,
ଭୋଗରେ ଆଶକ୍ତ ଥିଲେ      ପରମାର୍ଥ ଭୁଲି ।

ବାହାର ବଚନ ଲୀଳା କେ ବୁଝିବ ନରେ ?
କେତେ ଅଘଟ ଘଟନ ଘଟେ ଏ ମହୀରେ ।
ଅନେକ ଶାନ୍ତୋବା ଘରେ ଭକ୍ତ ତୁକାରାମ,
ଅତିଥି ବେଶରେ ଆସି କରିଲେ ବିଶ୍ରାମ ।
ସାଧୁ ସଙ୍ଗର ମହିମା କେ ପାରିବ କହି,
ସାଧୁ ପାଦ ରେଣୁ ପାଇ କୃତାର୍ଥ ଏ ମହୀ ।
ଭବସିନ୍ଧୁ ତରିବାକୁ ସାଧୁସଙ୍ଗ ନାବ,
କ୍ଷଣ ସାଧୁ ସଙ୍ଗେ ହୁଏ ଅପୂର୍ବ ସମ୍ଭବ ।
ରାତିଏ ମାତର ତୁକା— ରାମ ଥିଲେ ରହି,
ଉପଦେଶେ କବା ଜାଦୁ ଜାରିଗଲେ ସେହି ।
ରାଜଭୋଗ ଶାନ୍ତୋବାକୁ ତୁଚ୍ଛ ପଡ଼େ ଜଣା,
ସମ୍ପଦେ, ସନ୍ମାନେ ଆଉ ନ ରହେ କାମନା ।
ଭାବନ୍ତି, "ଦୁର୍ଲ୍ଲଭ ଜନ୍ମ ହେଲେ ଅଏ ସାର,
କାମିନୀ କାଞ୍ଚନ ସୁଖ ମଣେ ବଡ଼ କରି ।
କେତେ ତ କଲଣି ଭୋଗ, ଭୋଗେ ଭାସେ ମୁହିଁ,
ପରାଣେ ନମିଳେ ତୃପ୍ତି ଆସିଲା ତ ନାହିଁ !
ଯେତେ ଭୋଗ କରେ ତୃଷ୍ଣା ବଢ଼ଇ ସେତିକ,
ଅଶାନ୍ତିରେ ପୋଡ଼େ ପ୍ରାଣ, ନଭୋଗ ତ ଭେଳେକ !
ଏହି ତ ସଂସାର-ମାୟା ନ ଦେଖାଏ ବାଟ,
ଏ ବନ୍ଧନ ନ କାଟିଲେ, ନାହିଁ ବିଭୁ ଭେଟ ।"
ବାକଦେଲେ ଅଧିକାଂଶ ପୈତୃକ ସମ୍ପତ୍ତି,
ବାଣ୍ଟି ଦୀନଦୁଃଖୀ ପ୍ରାଣେ ଆଣିଲେ ତୃପତି ।
ପାଟ ପୀତାମ୍ବର ଛାଡ଼ି ନେଙ୍ଗୁଟି ଧଇଲେ,
ବନ ବଢ଼ ମଣି ସୌଧ ବାସ ବରଜିଲେ ।

ବନୁଁ ମହାବନେ ସେହୁ ଯାଉଛନ୍ତି ଚଳି,
ପଥେ ଧ୍ୟାନସ୍ଥ ତାଙ୍କୁ ରଖଇ ଓଗାଳି ।
ନଈରେ ବିଷମ ବଢ଼ି ଉଚ୍ଛୁଳୁଛି ପାଣି,
ଭୀମା ଭୀମ ବେଶ ଧରି କମ୍ପାଏ ଅବନୀ ।
ଶାନ୍ତୋବା ଚରଣ ସ୍ଥିର, ନାହିଁ ଭୟ ଲେଶ,
ଭବସମୁଦ୍ର ତରିବେ ବାନ୍ଧନ୍ତି ସାହସ ।
ତାଙ୍କୁ କିବା ଡରାଇବ, ଭୀମା କ୍ଷୁଦ୍ର ନଈ ?
ଡେଇଁଲେ ଭୀଷଣ ଗର୍ତ୍ତେ ଆଗ ପଛ ନାହିଁ !
ପହଁରି ତରିଲେ ନଈ ଧରି ପରପାର,
ଦେଖନ୍ତି ସୁନ୍ଦର ବନ, ପର୍ବତ ରୁଚିର ।
ବନ-ପରବତ-ଶୋଭା ଦେଖନ୍ତି ନିରେଖି,
ଜଡ଼ଯାଏ ପ୍ରାଣମନ କାଢ଼ି ନହେ ଆଖି ।
ଖୋଜି ଗୁମ୍ଫା ଏକ ଦେଖେ, ଖୁସି ବଇରାଗୀ,
ପାତିଲେ ଆସନ ଦୃଢ଼, ଯୋଗେ ଗଲେ ଲାଗି ।
ଶାନ୍ତୋବାଙ୍କ ଗୃହେ ଜନେ ବିରହ ନ ସହି,
ଚିନ୍ତନ୍ତି ଉପାୟ ତାଙ୍କୁ ଆଣିବେ ଫେରାଇ ।
ଫେରେ କି ରୁକ୍ମିଣୀ ରଥ, ସିଦ୍ଧଗାମୀ ନଈ,
ଗଢ଼ବ-ଢ଼ୋଲା ଯୋଗୀ ମନ ପରମାର୍ଥ ପାଇ ?
ପେଷିବେ କି ପତ୍ନୀ ରତି ଜଣି ରୂପବତୀ ?
ରୂପ ମୋହେ ପଡ଼ି ଅବା ଫେରିପାରେ ପତି ।
ପତି ପାଶେ ପତିବ୍ରତା ଯିବାକୁ ଅଧୀର,
ପତି ତା ଦେବତା, ପତି ଗତିମୁକ୍ତି ପର !
ନ ଫେରନ୍ତୁ, ପତି ବନେ ରଚନ୍ତୁ ସାଧନା,
ସାଧନାରେ ସାଥୀ ହେବ, କେ କରିବ ମନା ?

ଗୃହେ ଥିଲ ଅଙ୍କଲକ୍ଷ୍ମୀ ସଂଯୋଗର ସାଥୀ,
ତପସ୍ୟାରେ ଯୋଗ ଦେଇ ଉପଗୃର ଯାଥୀ ।
ସଙ୍ଗ ଚଳିଗଲ ବନେ ପ୍ରାଣପତି ସହିଁ,
ରହିଲ ପାଶେ ବାଳା ମସ୍ତକ ଲୁଆଇଁ ।
ବକ୍ଷେ ବନ୍ଧା ପତିପ୍ରାଣ ନ ଟଳିଲ ତିଳେ,
ନ ଭାଷିଲେ ପଦେ କଥା, ନ ଚାହିଁଲେ ଡୋଳେ ।
ନିଜ ଭଜନରେ ନିଜେ ରହିଲେ ଲଗନ,
ଦିନେ ପଦେ ପଡ଼ି ବାଳା କରଇ ନିବେଦନ ।
କହଇ, "ପରାଣନାଥ ! ଶୁଣ ମୁଁ ତ ମଣେ,
ଅସାର ସଂସାର ସୁଖ ତେଜିଲେ ଆପଣେ ।
ତନ ମନ ସବୁ ଅର- ପିଲେ ପ୍ରଭୁଠାରେ,
ସେ ଶୁଭ ସାଧନା ଧରେ, ଆଜ୍ଞା ହେଉ ମୋରେ ।
ଆପଣଙ୍କ ଭଗବାନ ପୂଜନ୍ତୁ ଆପଣ,
ବାଧା କାହିଁ, ପୂଜେ ମୋର ଦେବତା ଚରଣ !
ମୋ ପ୍ରାଣଦେବତା ତୁମେ ବନେ ତପେ ରତ,
ଛାଡ଼ ମୁଁ ଆଶ୍ରୟ-ହୀନା, ନାହିଁ ଦେଖେ ପଥ ।"
ରୁଦ୍ଧ ହେଲ ବାଳା କଣ୍ଠ ନାହିଁ ପାରେ କହି,
ଲୋତକରେ ପୂର୍ଣ୍ଣ ଚକ୍ଷୁ, ନାହିଁ ପାରେ ଚାହିଁ ।
ନାରୀ ଅର୍ଦ୍ଧାଙ୍ଗିନୀ ଧର୍ମ- ପଥେ ପତି ସାଥୀ,
କାମ ଦୂଷିତ ନରକେ ନ ଫିଟାଏ ବାଧା ।
ଶାନ୍ତୋବା ପରାଣେ ନାହିଁ କାମନା ବିକାର,
ଭାବନ୍ତି, ଦେଖିବେ ସେହୁ ପତ୍ନୀର ମଙ୍ଗଳ ।
ଶାନ୍ତୋ—ପାଖେ ତୁ ରହିବୁ ବାଳା ! ଯଦି ତୋ ବାସନା,
ରହିବାରେ କେହୁ ତୋତେ କରିପାରେ ମନା ?

ବସ୍ତ୍ରଭୂଷଣ ଗୁଡ଼ ଭିକାରୁଣୀ ବେଶ,
ଧରିବାରେ ଯେବେ ମନେ ନୁହେ କ୍ଳେଶ ଲେଶ ।
ଭିକ୍ଷାନ୍ନେ ଉଦର ତୋଷି, କାଟିପାରୁ କାଳ,
ରହ ପାଶେ, ତା ନ ହେଲେ ଯାହିଁ ଇଚ୍ଛା ଚଳ ।
କାଢ଼ି ଫିଙ୍ଗି ଦେଲେ ସତୀ ଭୂଷଣ-ସମ୍ଭାର,
ନେଲେ ତପସ୍ୱିନୀ ବେଶ, ନାହିଁ ଆଡ଼ମ୍ବର ।
ପତିସେବା କଲେ ସାର, ପତିଙ୍କ ଚରଣେ,
ବସି, ମାତିଗଲେ ବାଳା ସାଧନେ, ଭଜନେ ।
ଶାନ୍ତୋବା ଭାବନ୍ତି ମନେ, କରିବେ ପରୀକ୍ଷା,
ପତ୍ନୀରେ ସଂଯମ, ଧୈର୍ଯ୍ୟ, ତ୍ୟାଗ ଆଦି ଶିକ୍ଷା ।
କହନ୍ତି, "ଗୋ ସହି ! ରୁଟି ଖାଇ ଖାଇ ମନ,
ବିରକ୍ତ ହେଲଣି, ଆଜି ନ ଛୁଇଁବ ଜାଣ ।
ଗ୍ରାମେ ଯାଇ ଦଣ୍ଡଘରୁ ରୁଟିର ବକଳା,
ଭିକ୍ଷା କରି ଆଣିବୁ କି, ଭୁଞ୍ଜିବି ମୁଁ ବାଳା ?
ବିଶୁଦ୍ଧ ବକଳା ନାହିଁ ଆନେ ପ୍ରୟୋଜନ,
ଆଣିଲେ କଷ୍ଟହିଁ ସାର, ନ ହେବ ଭୋଜନ ।
ଧନୀ ପିତା-ମାତା କୋଳେ ବଢ଼ିଲା ଆଦରେ,
ପଶିଲା ଶ୍ୱଶୁରଘର ବିଳାସ-ସମ୍ଭାରେ ।
ଅନ୍ତଃପୁର ବାଳା ଦେଖେ ନାହିଁ ରବି ତାରା,
ସେହୁ ପୁଣି ଭିକ୍ଷା ମାଗେ ପିନ୍ଧି ଫଟା ଚିରା ।
ସେ ଶୁଦ୍ଧା ତପସ୍ୱିନୀ ଅତୁଲ୍ୟ ମହୀରେ !
ପତିର ଆଜ୍ଞାରେ ସତୀ କିବା ନାହିଁ ପାରେ !
ଗ୍ରାମେ ବାଳା ଭିଖ ମାଗେ ବୁଲି ଘରେ ଘରେ,
ଅଦଭୁତେ ମିଳିଲା ସେ ନଣନ୍ଦ ଦୁଆରେ ।

ଦେଖି ଭାଉଜେ ନଣନ୍ଦ    ଚକ୍ଷୁ ହେଲ ସ୍ଥିର,
କୁଣ୍ଠାଇ ବୋବାଳି ଗୁଡ଼େ    ନ ଫିଟଇ ଗିର ।
ନଣନ୍ଦ—ପିତାଙ୍କ ବିପୁଳ ଧନ    ଗଲ କାଳେ ଉଡ଼ି,
କୁବେର ବିଭବ ଧରି    ଲକ୍ଷ୍ମୀ ଗଲେ ଛାଡ଼ି ।
ଭାଉଜ ! ତୁ ଥାଳି ଧରି    ବୁଲିବୁ ଦୁଆରେ !
ଛାତି ଫାଟିଯାଏ ମୋର    ଅନ୍ତର ବିଦରେ !
ଭାଉଜ—ଏ କି କଥା ? ସଙ୍ଗାତ ଗୋ ! ଦୁଃଖ କାହିଁପାଇଁ !
ଭାଇଙ୍କ ତପସ୍ୟା ବଳ,    ତୁମେ ଜାଣନାହିଁ ।
ସେ ଦୃଷ୍ଟିରେ କିବା ଶକ୍ତି,    ମନେ କିବା ଠାଣି,
ଜାଣିଲେ ଦେବତା ଭାବି    ପୂଜନ୍ତି ଚରଣ ।
ଭାଗ୍ୟେ ମୋ ଦେବତା ପତି !    ହେଉଛି ଉଚ୍ଛୁର;
ବିକଳା ଖଣ୍ଡିଏ ଦିଅ,    ଯିବ ଦଶ ଘର ।
ଦଶଖଣ୍ଡି ବିକଳାରେ    ଭାଇଙ୍କ ଭୋଜନ,
ହେବ ଆଜି ଏ କଥା ଗୋ !    ଅନ୍ୟଥା ନ ଘେନ ।
ନଣନ୍ଦ—ହେବ ନାହିଁ, ହେବ ନାହିଁ,    ତୋତେ ମୋର ରାଣ !
କହିବୁ 'ଭଗିନୀ ତବ    କରିଲେ ବାରଣ,
ଏସବୁ ବ୍ୟଞ୍ଜନ ଭରି    ପେଷିଛନ୍ତି ଥାଳୀ,
କହିଛନ୍ତି, 'କାଲିଠାରୁ    ଭିକ୍ଷା ନଅ ବୁଲି !'
ଏକାନ୍ତ ବିବଶ ସତୀ    ନ ପାରିଲ ଟାଳି
ନଣନ୍ଦ କଥା, ଦଉଡ଼େ    ହାତେ ଧରି ଥାଳି ।
ଖସିବା ଚଢ଼ିବା ଗିରି    ଗେଲ କଥା ନୁହେ,
ଛିଣ୍ଡିଲା ଆଙ୍ଗୁଠି ଟିଣି    ଖରଶ୍ୱାସ ବହେ ।
ବହୁ କଷ୍ଟେ ଥୁଏ ଥାଳୀ    ପତିଙ୍କ ଚରଣେ
କି ଭାବିବେ ଦେବତା ମୋ,    ଭୟେ ମନେ ଗୁଣେ !

ଶୁଣେ ଶିବ୍ର ବାଣୀ "ଏକ ଖାଦ୍ୟ ଭିକାଶର !
ଫେରାଅ, ଫେରାଅ ବେଗେ ଲୋଡ଼ା ନାହିଁ ମୋର ।"
ସବିନୟେ ଭାଷେ ସତୀ ବଚନ ନିର୍ବନ୍ଧ,
ନଣନ୍ଦର ଘର ପରେ ଘର, ଯେତେ ଦ୍ୱନ୍ଦ୍ୱ ।
କାହିଁରେ ତପସ୍ୱୀ ପ୍ରାଣ ନ ଟଳିଲା ତିଳେ,
ଥାଳୀ ନେଇଧାଇଁ ସତୀ ଚରଣ ଧଇଲେ ।
ପଞ୍ଚ ଉପବାସେ ରହେ, ଶିବ ଅଶ୍ରୁ ଝରେ,
ମିଳିଲା ନିରାଶ ପ୍ରାଣେ ନଣନ୍ଦ-ମନ୍ଦିରେ ।
ମଧୁର ବଚନେ ବୋଧି ଫେରାଇଲା ଥାଳୀ,
ବିଶୁଦ୍ଧ ବକଳା ଧରେ ଦଶଦ୍ୱାର ବୁଲି ।
ଏତେ ହେଲା କାନ୍ଦେ ବାଳା, ନିବଳ ଆସେ ବୁଡ଼ି,
ଘୋଟାଇଲା କଳାମେଘ, ମାରେ ଘଡ଼ଘଡ଼ି !
ମୂଷଳ ଧାରରେ ଘନ ବରଷିଲା ଜଳ,
କେ କହିବ ସତୀପ୍ରାଣ କି ଶିବେ ବ୍ୟାକୁଳ !
ପ୍ରାଣଠୁଁ ବଳି ସତୀରେ ରୁଟିର ବକଳା
ପିନ୍ଧିବା ଲୁଗାରେ ତାଙ୍କେ ଶିବେ 'ଉଦା ହେଲା !'
ବର୍ଷାମାଡ଼ ଖାଇ ଦେହ କମ୍ପେ ଥର ଥର,
ଘଡ଼ଘଡ଼ି ନାଦ ଶ୍ରୁତି କରଇ ବଧିର ।
ବିଜୁଳି ଚମକେ ଚଳେ ପଥ ବାରି ବାରି,
ବହୁ କଷ୍ଟେ ମିଳେ ଆସି ଶିମାକୂଳେ ବାଳୀ ।
ଦୁଇ କୂଳ ଖାଇ ବହୁ- ଅଛି ଶିମାଜଳ !
ଶିମାରେ ଯେ ଘୋର ବଢ଼ି କେମନ୍ତେ ହେବ ପାର !
ଅବିଶ୍ରାନ୍ତ ପଡ଼େ ବାରି, ସତୀ ଅଶ୍ରୁ ଢାଳେ,
ଆରମ୍ଭେ ପ୍ରାର୍ଥନା ରଚେ ଶମ୍ଭୁ ପାଦତଳେ !

“ହେ ପ୍ରଭୁ, ହେ ପରାତ୍ପର    ଆରତଭଞ୍ଜନ,
ଘୋର ଦୁଃଖେ ମାଗେ ଦୀନା    ଅଭୟ ଶରଣ ।
ପତିଦେବ ଉପବାସେ,    ଅନ୍ନ ହାତେ ମୋର !
ଏମାରେ ଯେ ଘୋର ବର୍ଷି,    କର ତୁ ଉଦ୍ଧାର !”
ସତୀର ବ୍ୟାକୁଳ ଡାକ,    କରୁଣ ଜଣାଣ
ବାଜେ ବଜ୍ରନାଦେ କର୍ଣ୍ଣେ,    ପ୍ରଭୁ ଆର୍ତ୍ତତ୍ରାଣ
ଧାଇଁଲେ କେଉଟ ବେଶେ;    କହନ୍ତି, “ଭଗିନୀ,
ଦୁର୍ଗମ ଏ ବରଷାରେ    ଏକାକୀ ତୁ ପୁଣି !
ହେବ ନାହିଁ ! ହେବ ନାହିଁ !    କି ତୋର ସାହସ !
ପାରିହୋଇ କେତେ ଦୂର    ଯିବୁ କାହା ପାଶ ?
ଭିଜିଗଲା ଧାନ ବାଲୀ    ଚାହେଁ ଖୋଲି ଆଖି,
ମୃଦୁହାସେ ଅଗ୍ରେ ଉଭା    କେଉଟ ସେ ଦେଖି,
କହଇ ହରଷେ, “ଭାଇ,    ଅନାଥର ନାଥ
ଫେରିଦେଲେ ପାଶେ ତୋତେ,    ନ ସହୁ ଆରତ ।
ନଦୀର ସେ ପାଖେ ପତି    ଅଛନ୍ତି ଉପାସେ,
ପାରିକର ଆଉ ଡେରି    ନ କର ତୁ ଲେଶେ ।”
କେଉଟ କହେ, “ଭଗିନୀ !    ଭୟ କର ଦୂର,
ମୁଁ ଯାଇଁ ଛାଡ଼ି ଆସୁଛି,    ଯହିଁ ତୋର ଘର ।”
ତୋଳିଲା ସତୀକୁ କାନ୍ଧେ,    ନାବେ କଲା ପାର
କ୍ଷଣକେ କୁଟୀର ପାଶେ    ଦେଲା ସେ ଉତ୍ତାର ।
ଦେଖୁଁ ଦେଖୁଁ କେଉଟ ସେ    ବନେ ଉଭାଇଲା;
ଧନ୍ୟବାଦ ଦେବା ପାଇଁ    ସମୟ ନ ଦେଲା !
ଚେତା ହେଲା, ଲାଜେ ବୁଡ଼େ,    ସତୀ ଅଙ୍ଗେ ଚାହିଁ,
ସମ୍ପୂର୍ଣ୍ଣ ଲଙ୍ଗଳା ସେ ଯେ !    ବସ୍ତ୍ର ଗଲା କାହିଁ ?

"ବସ୍ତ୍ରେ ଘୋଡ଼ା ଅଛୁ ରୁଟି କ ହେଲା, କ ହେଲା !
କେଉଁଠ କ ଘବଥିବ ପରାଣ ନ ଗଲା !"
ରୁଟିର ଉପରୁ ବସ୍ତ୍ର ଉଦ୍ଧାର ଯତନେ,
ଚପୁଡ଼ ବରଷାପାଣି ସଖୀ ଅଙ୍ଗେ ଘେନେ !
ପତ୍ରରେ ପ୍ରଣମି ରୁଟି ଆଗେ ଦେଲେ ଥୋଇ,
ନୃଟିରେ ଶାନ୍ତୋବା ବାରେ ଗୃହିଁଲେ ତ ନାହିଁ !
ସେବେଢ଼େ ତେଜ ପତ୍ନୀ ଅଙ୍ଗେ, ସଉନ୍ଦର୍ଯ୍ୟ ସେତେ,
ସେ ସାତ୍ତ୍ୱିକ ଆକର୍ଷଣ, ଆତ୍ମୋତ୍ସର୍ଗ ସେତେ ।
କେବେ ତ ନ ଥିଲେ ଦେଖି, ପଚ୍ଛରନ୍ତ ଧୀରେ,
"ଏ ଦୁର୍ଗମେ କେହ୍ନେ ସାଧ୍ୱୀ ଆସିଲ୍ ଏକାରେ ?"
ଠିକେ ଠିକେ ସବୁ କଥା ସଖୀ ଗଲା କହ୍ୱ,
ଥାଳୀ ଫେରାଇଲା, ରୁଟି ମାଗି ଆଣେ ବହ୍ନ ।
ପଥେ ବର୍ଷା, ନଘ ବୃଦ୍ଧି, ଉଡ଼ିଲା ସାହସ ।
କାନ୍ଦଣ ଡାକଲା, ଦୟା- କର ପୀତବାସ,
ଚକ୍ଷୁ ଫେଡ଼ ଦେଖିଲା ସେ କେଉଁଠ କପରେ,
ଆସି ଆଗେ ଉଭାହେଲେ ଦେଲେ ଆଶା ଭରେ ।
ହସି ହସି ଭଷିଲେ ସେ କ ମଧୁ ବଚନ,
ଭଗିମ ବୋଲ୍ଣ ଡାକ ଦେଲେ ଆଶ୍ୱାସନ !
କାନ୍ଧେ ବହ୍ନ ନାବେ ରଖି କରିଲେ ସେ ପାର,
ଆଣିଲେ କାନ୍ଧରେ ଦ୍ୱାରେ ଦେଲେ ସେ ଉତ୍ତର !
ଧନ୍ୟବାଦ ନାହିଁ ଦେଉଁ, ହେଲେ ଅନ୍ତର୍ହିତ,
ସବୁ ତ ମଧୁର ଲୀଳା, ସୃଜିଲେ ଅମୃତ !
ଶାନ୍ତୋବା ନୟନୁ ଅଶ୍ରୁ ବହେ ଧାର ଧାର,
କହନ୍ତ ପତ୍ନୀରେ, "ସଖୀ, ଧନ୍ୟ ଭାଗ୍ୟ ତୋର !

ଭୀଷଣ ଏ ଭୀମା ନଦୀ    କେ କରିବ ପାରି,
ପୁଣି ବଢ଼ିବେଳେ ? ନାହିଁ    କେଉଁଠି ସେପରି ।
ଭବ-ସମୁଦ୍ରକୁ ପାରି    କରେ ସେ କେଉଁଠି,
ଯାହା ପାଇଁ ଯୋଗୀ ଧରେ    ସାଧନା ନିରାଟି ।
ଜନ୍ମ ଜନ୍ମ ତପ କରି    ଯାରେ ନୁହେ ଧରି,
ଭାଗ୍ୟ ତୋର କଲେ ସଖି    ଭୀମା ନଦୀ ପାରି !
ଆସିଲେ ମୋ ଦ୍ୱାରେ ପ୍ରଭୁ    ଗଲେ ସତେ ଫେରି !
ଅଭାଗା ମୁଁ, ଗଲେ ଛାଡ଼ି    ବାରେ ନ ପଚାରି ?
ନିଅ ଫିଙ୍ଗିଦିଅ ଲୁଟି    ପଶୁ ପକ୍ଷୀ ମୁଖେ,
ପାପହୀନ ସେ ଜୀବନ,    ଭୁଞ୍ଜନ୍ତୁ ସେ ସୁଖେ ।
ମହାପାପୀ, ଏ ଜୀବନେ    ନ ଘେନିବ ଜଳ,
ଯେତେ ଦିନ ନ ଦେଖିଛି    ଚରଣ କମଳ ।"
କଷ୍ଟ ସିନା ହେଲ ସାର,    ନ ଭୁଞ୍ଜିଲେ ପତି,
ପଚାରି ବକଲେ ବାଳା    ବକଳା ଫିଙ୍ଗନ୍ତି ।
ପତି ନ ଖାଇଲେ ସଖି    ଘେନଇ କି ବାରି,
ଦମ୍ପତି କାଟନ୍ତି କାଳ    ଅନଶନ ଧରି ।
କେତେ ଦିନ ଗଲା ବିତି    ନାହିଁ ତା କଳନା,
ଆକୁଳେ ଯୁଗଳ ପ୍ରାଣୁ    ଉଠଇ ପ୍ରାର୍ଥନା ।
ହରିଭକ୍ତ ବୈଶ୍ୟ ଥିଲା    ପାଖ ଗ୍ରାମେ ରହି,
'ଭୋଜନ ଯୋଗାଅ ଭକ୍ତେ'    ସ୍ୱପ୍ନେ ପ୍ରଭୁ କହି ।
ବହୁ ପ୍ରକାରର ଅନ୍ନ    ବ୍ୟଞ୍ଜନ ତିଆରି,
ବୈଶ୍ୟ ନେଇ ଥୁଏ ପାଖେ,    ପ୍ରଭୁ ଆଜ୍ଞା ପାଳି ।
କହନ୍ତି ଶାନ୍ତୋବା, "ଭାଇ,    ତୁମେ ଯେ ବା ହୁଅ,
ପଠାଇଛି ଯେହୁ ତୋରେ    ତାହାଙ୍କୁ ପଠାଅ ।

ନ ଦେଖିଲେ ତାରେ, ଅନ୍ନ ନ ଦେବୁ ତ ମୁଖେ,
ଅନସନେ ଯାଉ ପ୍ରାଣ, ପ୍ରଭୁ ଥା'ନ୍ତୁ ସୁଖେ ।
ଅନ୍ନ ଥୋଇ, ବୈଶ୍ୟ ନିଜ ଗୃହେ ଗଲେ ଚଳି,
ଶାନ୍ତୋବା ଅଟଳ ଭକ୍ତ ମନେ ମନେ ଭାଳି ।
ଖାଦ୍ୟଦ୍ରବ୍ୟେ ପଡ଼େ ଦୃଷ୍ଟି କହନ୍ତ ଶାନ୍ତୋବା,
"ଅନ୍ନ ବିନା ଲୋକେ ବଡ଼, କି ଅଛି ସେ ଥିବା !
ଖାଦ୍ୟ-ଦୋଷେ ମରେ ନର, ସଂଯମେ ଜୀବନ,
ଜୀବନେ ବା କିସ ଅଛି, ଜୀବନ୍ତ ମରଣ !
ଅସାର ଏ ଅନ୍ନ, ତୃପ୍ତି ଆଣେ ନାହିଁ ତନେ,
ଟିକିଏ ଅନ୍ନରେ ହୁଏ, ପଣଶତ ମନେ !
ଏଇ ଛାର ଭକ୍ଷ୍ୟଦ୍ରବ୍ୟେ, ଜୀବନ-ବିଭବେ,
ଭୁଲାଇପାରିବ ପ୍ରଭୁ ! ଭାବ ନାହିଁ ଲଭେ ।
ଆସ ବାରେ ଦେଖାଦିଅ, ଆସ ବଂଶୀପାଣି,
ତ୍ରିଭଙ୍ଗୀ ଠାଣିରେ ଯୋଖି ବଙ୍କିମ ଗ୍ରୀବାଟି,
ପ୍ରେମର ତରଙ୍ଗ ଖେଳୁ, ବଜାଅ ମୁରଲୀ,
ଆମେ ତୋ ଚରଣଦାସ, କହ ମୋର ବୋଲି ।"
ବାଜିଲା ପରାଣେ ଡାକ, ନ ପାରିଲେ ସହି,
ନଟବର ବେଶେ ଦେଖା- ଦେଲେ ଭାବଗ୍ରାହୀ ।
ଭକତ ଯୁଗଳେ ପ୍ରେମେ ବସାଇଲେ କୋଳେ,
ସ୍ନେହେ ଅନ୍ନ ଦେଲେ ମୁଖେ ପ୍ରେମେ ଅଶ୍ରୁ ଗଲେ ।
ଦଗ୍ଧ ତପତ ପ୍ରାଣ କରିଣ ଶୀତଳ,
ବହୁ କ୍ଷଣ ରହି ପ୍ରଭୁ ହୋଇଲେ ଅନ୍ତର ।
କଲେ ଆଶୀର୍ବାଦ ମିଳୁ- ଥିବରେ ଦର୍ଶନ,
ଯେ ଦିନ ଯେ ରୂପେ ଇଚ୍ଛା ଭକତପ୍ରଧାନ !

ପଣ୍ଢରପୁରରେ ପ୍ରଭୁ ବିଟ୍ଠଲ ମନ୍ଦିରେ,
ରଥ ଏକାଦଶୀ ଯାତ୍ରା ବିଖ୍ୟାତ ଲୋକରେ ।
ଲକ୍ଷ ଲକ୍ଷ ଜନ ପ୍ରେମେ ପୂଜନ୍ତି ବିଟ୍ଠଲ,
କରନ୍ତି ଜୀବନ ଧନ୍ୟ, ଉଠେ ହରିବୋଲ ।
ସେହି ସେ ଦର୍ଶନ ପାଇଁ ଶାନ୍ତୋବା-ଦମ୍ପତି,
ନାମ-ସଂକୀର୍ତ୍ତନ କରି କରୁଛନ୍ତି ଗତି ।
ଦଶମୀ ରାତ୍ରିରେ ଯାଇ ଦଶ ଘଡ଼ି ଜନ୍ମ,
ଧାଇଁଲନ୍ତି ଭକତ ଯେତେ କରି ସଙ୍କୀର୍ତ୍ତନ ।
ଅର୍ଦ୍ଧରାତ୍ରି ହେଲା, ଆସି ଭୀମା ନଦୀ ପାଶେ,
ଦେଖନ୍ତି ପ୍ଳାବଣ ବଢ଼ି ଫେରନ୍ତି ନିରାଶେ ।
ଶାନ୍ତୋବା କହନ୍ତି, "ଆସ, ଆସ, ହେ ଭକତେ,
ନାହିଁ ଭୟ, ପିଛୁ ଧର, ଯାଏ ମୁଁ ପୁରତେ ।
ଏ ଭବ-କାଣ୍ଡାରୀ ହରି ନାମ ତୁଣ୍ଡେ ଧରି,
ଏ ପ୍ଲାବ ସାମାନ୍ୟ ନଈ ହେବାନି କି ପାରି ?
ଚାଲିଲେ ଶାନ୍ତୋବା ପତି- ପତ୍ନୀ ଦୁଇ ଜଣ,
ପଛେ ଶତ ଶତ ଭକ୍ତ କରନ୍ତି ଗମନ ।
ପାଣି ଶୁଖି ଖୋଲିଗଲା ପଥ ସୁପ୍ରଶସ୍ତ :
ପାରି ହେଲେ ଭକ୍ତଗଣ ପ୍ରେମେ ବିଗଳିତ ।
"ଜୟ ହେ ଶାନ୍ତୋବା, ଜୟ ପତି ପତ୍ନୀ ଦୁଇ,"
ଯାତ୍ରୀଗଣ ତୀର୍ଥେ ଗଲେ ଭକ୍ତ ଯଶ ଗାଇ ।
ଭକ୍ତ ଯଶ ଗାଇ କଲେ ବିଟ୍ଠଲ ଦର୍ଶନ,
ଶୁଣନ୍ତି ଶାନ୍ତୋବା କର୍ଣ୍ଣେ ଶ୍ରୀମୁଖବଚନ ।
"ପତିପତ୍ନୀ ପାଖେ ଆସ, ନିତି ଦେଖେ ମୁଖ,
ଏତେ ଦୂରେ ଅଛ, ପ୍ରାଣେ ତିଳେ ନାହିଁ ସୁଖ ।"

ପ୍ରଭୁଙ୍କ ନିଦେଶେ ପତି- ପତ୍ନୀ ଗଲେ ପାଖେ,
ସାଧୁ ସଙ୍ଗ ପାଇ ବନ୍ଧୁ ରହିଗଲେ ସୁଖେ ।
ପଣ୍ଡରପୁର ହୋଇଲା ବୈକୁଣ୍ଠ ଭୁବନ,
ବନ୍ଧୁ ଦୂରୁଁ ଆସି ଜମି- ଗଲେ ଭକ୍ତଗଣ ।
ଲାଗିଲା ପ୍ରେମର ଲୀଳା ନାଚିଲା ମନ୍ଦର,
କ୍ଷଣ ଭକ୍ତ-ସଙ୍ଗ-ଲଭେ ରହିଗଲେ ନର !
ଭକ୍ତ ପତିପତ୍ନୀ ଯଣଃ ଖେଳିଲା ଘରତେ
ସରବେ ଦେଖିଲେ ଭକ୍ତ ବିଠ୍‌ଠଲ ପୁରତେ ।
କି ଦିବ୍ୟ ଉନ୍ମାଦ ପତି- ପତ୍ନୀ ଦେହେ ଖେଳେ,
ଦର୍ଶନରେ ସେ ଉନ୍ମାଦ ପ୍ରାଣୁଁ ପ୍ରାଣେ ଚଳେ ।
କୋଟି ପ୍ରାଣ ଧନ୍ୟ କଲେ ଭକତଯୁଗଳ,
ଦିବ୍ୟୋନ୍ମାଦେ ନାଚୁ ନାଚୁ ତେଜିଲେ ଶରୀର ।

× × × ×

ଧନ୍ୟ ଭକ୍ତବନ୍ଧୁ, ଧନ୍ୟ ଭକତେ ତ୍ରିଲୋକ
ଭକତ ଶକତି ତୋର କେ ବର୍ଣ୍ଣି ପାରିବ ?
ତୋଠାରୁ ଭକତ ବଡ଼, ବଡ଼ ତା ଶକତି,
ଭକ୍ତ ସଙ୍ଗ ତୁଚ୍ଛେ ତରେ ମହା ପାପମତି !
ଭକ୍ତ ସଙ୍ଗ ମିଳୁ ସଦା, ଲୋଟେ ପଦତଳେ,
ଆଉ କିଛୁ ତହୁଁ ବଡ଼ ନ ଦିଶେ ମହୀରେ ।

---

# ଲଳିତା ଚରଣ

ପରମ ଭକତ ଏକ ବୈଶ୍ୟ ପରିବାର,
ଚିତ୍ରକୂଟ ପାଖ ଗ୍ରାମେ କରିଥିଲେ ଘର ।

ପତିପତ୍ନୀ ଦୁଇ ଜଣ    କରି କଣା ବକା,
ଦୋକାନ ବେବସା କରି    ଚଳାନ୍ତି ଜୀବିକା ।
ପିତା ମାତା ଶୁଦ୍ଧମତି    ପୂଜି ହନୁମାନ,
ପାଇଥିଲେ ଧର୍ମବଳେ    ତନୟ ରତନ ।
ଶୁଭ ଜନ୍ମାଷ୍ଟମୀ ରାତି    ହେବ ଦ୍ୱିପହର,
ମାତୃକୋଳ ପୂର୍ଣ୍ଣ କଲା    ଜନମି କୁମର ।
ଅତି ହୃଷ୍ଟ ଲଳିତ ତନୁ,    ରୂପ ମନୋହର,
ପିତା-ମାତା-ପ୍ରାଣ କଲା    ଲଳିତ, ମଧୁର ।
ଲଳିତାଚରଣ ନାମ    ଦେଲେ ପିତା ମାତା,
କୁମାରେ ଲଳିତ କରି    ଗଢ଼ିଲେ ବିଧାତା ।
ସୂର୍ଯ୍ୟ ନାରାୟଣେ ନିତି    ଅର୍ଘ୍ୟ କରି ଦାନ,
ଜନକ ପୂଜନ୍ତି ପ୍ରେମେ    ଦେବ ହନୁମାନ ।
ମାତାଙ୍କର ନିତି ନିତି    ତୁଳସୀପୂଜନ,
ପିତାଙ୍କଠି ହନୁମାନ    ଚାଳିଶାପଠନ ।
ପିଲାଦିନୁ ପୁଣି ପିତା    ମାତା ସାଥୀ ଧରେ,
ପ୍ରଭୁରେ ଭକତି ତାଙ୍କ    ଦେଖେ କୁତୂହଳେ ।
ପାଞ୍ଚ ସାତ ବର୍ଷ ଦିନୁ    ଲଳିତାଚରଣ,
ପରାଣ ଭକତି ତାର    ନମେ ହନୁମାନ ।
ହନୁମାନ ଚାଳିଶା ସେ    ପଢ଼ଇ ନିରତ,
ପ୍ରେମ ଗଦ ଗଦ ବାଣୀ    ମଧୁର, ଲଳିତ ।
କେବେ ବୋଧହୁଏ ତା'ରେ    ହନୁମାନ ନିଜେ,
ଶିରେ ହାତ ରଖି ପାଶେ    ଶୁଣିବାକୁ ବଜେ ।
ଅଙ୍ଗରେ ପୁଲକ, ବହେ    ପ୍ରେମେ ଅଶ୍ରୁଧାର,
ଭାବାବେଶେ କଟିଯାଏ    ପ୍ରହର ପ୍ରହର ।

ପୁତ୍ରର ଭକ୍ତିରେ ପିତା- ମ.ତା ଆନନ୍ଦିତ,
କହନ୍ତି, "ତୋହର ଦୟା ହେ ଅଞ୍ଜନାସୁତ !"
ପାଖ ଗ୍ରାମେ ହେଉଥିଲି ଦିନେ ଗପଲୀଳା,
ଲଳିତା ନୋହୁଣୁ ସଞ୍ଜ ତହିଁ ପହଞ୍ଚିଲି ।
ପଢ଼ିଲି ବିଷୟ, କୃଷ୍ଣ ମଥୁରା-ଗମନ,
ଗୋପୀଙ୍କ ବିରହଲୀଳା ବିଷ-ବିଦାରଣ ।
ବୃନ୍ଦାବନୁ ରଥେ କୃଷ୍ଣ ଯାଆନ୍ତି ମଥୁରା,
କେଶବାସ ଅସମ୍ଭାଳ ଗୋପୀଏ ଅଧୀରା ।
ଲୋକଲାଜ ଭୁଲି ଉଚ୍ଚେ କରନ୍ତି ରୋଦନ,
"ହା ଗୋବିନ୍ଦ, ଦାମୋଦର, ମାଧବ, ମୋହନ !
ଗୋପାଙ୍ଗନା ଲତା ତୁମେ ଆଶ୍ରୟ-ପାଦପ,
କୋମଳ କୁସୁମ ଆମେ ତୁମେ ତ ମଧୁପ ।
କୁମୁଦିନୀ ଗୋପାଙ୍ଗନା ତୁମେ ହିମକର,
ଗୋପାଙ୍ଗନା ମୀନ ତୁମେ ଭାଗୀରଥୀ [illegible]
ତୁମେ ଗଲେ ଗୋପାଙ୍ଗନା ବଞ୍ଚିବୁ କି କ୍ଷଣେ ?
ବିଷ ଦେଇ ମାରିଯାଅ ଗୋପୀ ଜଣେ ଜଣେ ।
ତୁମ୍ଭ ତ ପରାଣ, ଗଲେ ବଞ୍ଚିବୁ କପରି ?
ଗୋପୀନାଥ ନାମ ଧରି ଧରୁ ବଂଶୀଧାରୀ !
ଚରଣର ଦାସୀ ମାରି କିବା ପାଉରୁଷ,
ଅମୃତମୟ ତୋ ହୃଦ କାହିଁ ହେଲା ବିଷ ?
ଯାଅ ନାହିଁ ମଥୁରା ତୁ ଆସ ଆସ ଫେରି,
ଖଟୁଲୀରେ ରଖି ପୂଜି ଥିବୁ ଗୋପନାରୀ ।"
ଗୋପୀଙ୍କ ହୃଦୟଫଟା ବ୍ୟାକୁଳ କନ୍ଦନ
ଶୁଣି ଗୋପୀଭାବେ ଲୀନ ଲଳିତାଚରଣ ।

ବକ୍ଷ ବସ୍ତ୍ର ହେଲା ଓଦା ବହିଣ ଲୋତକ,
'ହା କୃଷ୍ଣ', 'ହା କୃଷ୍ଣ' କହି ଛୁଟେଇ ଆର୍ତ୍ତ ଡାକ !
କେତେ ଜନ୍ମର ବିରହ ହେଲା କି ଜାଗ୍ରତ,
ବାଳକ ବୋବାଳି ଶୁଣି ଜନେ ବିଚଳନ୍ତି ।
ପ୍ରବୋଧ ଦେବାକୁ କୋଳେ ଘେନନ୍ତି ବାଳକ,
ବୃଦ୍ଧେ ଶୋକେ ଭୋଳ ହୋଇ ଢାଳନ୍ତି ଲୋତକ ।
ଲୋତକର ଲୀଳା ଏବେ ପ୍ରାଣୁଁ ପ୍ରାଣେ ଖେଳେ,
ଧରଣୀ ହେଲା ପବିତ୍ର ପୂତ ଅଶ୍ରୁ ଜଳେ ।
ଉଦ୍ଧବ ଗୋପୀଙ୍କ ଦଶା ଦେଖି ଯାଇ ଫେରି,
କହନ୍ତି ରାଧିକା ଦଶା ଶୁଣନ୍ତି ମୁରାରି ।
ଲଳିତାଚରଣ ଦେଖେ ନଚେ ହନୁମାନ,
ଶ୍ରୀକୃଷ୍ଣେ ତାହାରି ଦଶା କରନ୍ତି ବର୍ଣ୍ଣନ ।
ଅଶ୍ରୁ ଢାଳି ଢାଳି ଜନେ ଗଲେ ଘରେ ଫେରି,
ଲଳିତାର ଅଶ୍ରୁ କେହି ନ ପାରେ ନିବାରି ।
ଘରେ ଫେରି ଲଳିତାର ଉନ୍ମାଦ ବଢ଼ିଲା,
ଖାଦ୍ୟପେୟ ଭୁଲି ହନୁ- ମାନେ ଆଶ୍ରା କଲା ।
ହନୁମାନ ବୃକଶା ସେ ଗୁଣି କରେ ନତି,
"ମୋ ଦଶା କୃଷ୍ଣରେ ପ୍ରଭୁ ଜଣାଅ ଝଟିତି ।
ପ୍ରାଣ ଯାଉଅଛି ଉଡ଼ି, ନୁହେ ଦମ୍ଭ ଧରି,
ରକ୍ଷାକର ହନୁମାନ ! ତୋ ପଦେ ଗୁହାରି ।"
ଲଳିତା ଦେଖଇ ଅଗ୍ରେ ନଚେ ହନୁମାନ,
ସ୍ନେହେ ଭାଷୁଛନ୍ତି ତାରେ ଅମିୟ ବଚନେ ।
"ବୃନ୍ଦାବନେ ଯାଇ ଦଶା ଜଣାଇଲି ତୋର,
ଚରଣେ ସେବା ମିଳିବ ନ ହୁଅ କାତର ।

ଶୁଣି ଆନନ୍ଦିତ ହେଲ ଶ୍ରୀମୁଖ ବଚନ,
'ଲଳିତା ଲଳିତା ପରି ମୋ ଆଦର ଧନ' । "
ଲଳିତା ଉନ୍ମାଦେ ଟଳି- ପଡ଼ଇ ଚରଣେ,
ହନୁମାନ ଦସ୍ୟୁ ସବୁ ଅନ୍ତରରେ ଘେନେ ।
ସେ ରାତ ଦେଖଇ ସ୍ୱପ୍ନ ନିଜେ ହନୁମାନ,
ଦ୍ୱାଦଶ ଅକ୍ଷର ମନ୍ତ୍ର କରନ୍ତି ପ୍ରଦାନ ।

"ଓଁ ନମୋ ଭଗବତେ ବାସୁଦେବାୟ"

ନିଜ ଜପମାଳା ଗଳେ ଗୁଡ଼ି ଭକ୍ତ ପାଇଁ,
ପରି ହନ ବୃନ୍ଦାବନେ ଲଳିତା ଚଳଇ ।
ଶରୀର ଧୂଳିଧୂସର ଶିରେ ହେଲା ଜଟା,
ଗଲା ବେଶ ପରିପାଟି ଖାଦ୍ୟ ପାନ ଘଟା ।
ପଥେ ବୃକ୍ଷତଳୁଁ ଫଳ ମିଳିଲେ ସେ ଖାଏ,
ନ ମିଳିଲେ ଉପବାସ, ଝର ପାଣି ପିଏ ।
ବହୁଧନ-ତ୍ୟକ୍ତ ପତ୍ନୀ ଯାଉଛି କି ଫେରି,
ଭେଟି ପ୍ରାଣନାଥେ ଦେବ ଉରସ ବସ୍ତ୍ରାରେ ?
ଦୁନିଆର ବେଶ ଯିନା ନର-ନେତ୍ର ମୋହେ,
ଅନ୍ତରର ଶୁଦ୍ଧ ବେଶ ଦେବତାଙ୍କୁ ଶୋହେ ।
ନାହିଁ ଶୌଚ, ନାହିଁ ସ୍ନାନ, ଧାନଧାନ ବେଶ,
ଶ୍ରୀକୃଷ୍ଣ ଚରଣତଳେ ଯାଇଁ ପରିବେଶ ।
ଚରଣେ ଗଡ଼େ ଲଳିତା ମହା ଭାବ ଭୋଳେ,
ତନୁ କଣ୍ଟକିତ ପ୍ରେମେ, ହର୍ଷେ ଅଶ୍ରୁ ଗଳେ ।
ପ୍ରହର ପ୍ରହର ଗଲା ନାହିଁ ଆସେ ଜ୍ଞାନ,
ଭୋକ ଶୋଷ ଭୁଲିଗଲା ନାହିଁ ସ୍ନାନ ପାନ ।

ସେବକ କହନ୍ତି, "ବାପା ! ଉଠ ସ୍ନାନ ସାର,
ପ୍ରସାଦ ପ୍ରସ୍ତୁତ ଭୁଞ୍ଜି ହୋଉଛି ଉଛୁର ।"
ଅଚ୍ଛା ଲଳିତାଠାରେ କହାଁ ଏତେ ପ୍ରୀତି !
ଲଳିତା ଭାବଇ 'ଲୀଳା ରଚନ୍ତି ଶ୍ରୀପତି ।'
ସ୍ନାନ ସାରି ଆନନ୍ଦେ ସେ ଭୋଗ ମୁଖେ ଦେଲ,
ବିରହଜ୍ୱାଳା ଭୁଲିଣ କୃତକୃତ୍ୟ ହେଲ ।
ପାବଛେ ବିଗ୍ରହେ ରହିଁ କାଟେ ସାରା ଦିନ,
କୁଞ୍ଜେ କୁଞ୍ଜେ ବୁଲି ରାତି କରଇ ଯାପନ ।
କୁଞ୍ଜେ କୁଞ୍ଜେ ବୃନ୍ଦାବନେ ଲାଗେ ନିତ୍ୟ ଲୀଳା,
ଅନ୍ୟେ ସିନା ଗୁପ୍ତ, ଦେଖେ ସିଦ୍ଧ ଭକ୍ତଡୋଳା ।
ଲଳିତା ଦେଖଇ କେବେ ରମ୍ୟ ରାସକେଳି,
କେବେ ବା ନୟନେ ଭାସେ ନବନୀତ ଚୋରି ।
କେବେ ବା ବାସହରଣ ଶକଟା-ମର୍ଦ୍ଦନ,
ଗୋଷ୍ଠ ଗୋପାଳଙ୍କ ଲୀଳା କରଇ ଦର୍ଶନ ।
ରସେ ଯୋଗ ଦେଇ କେବେ ହୁଏ ନୃତ୍ୟରତ,
ନିଜ ଦୁଇ ହାତେ ଧରି କୃଷ୍ଣ ଦୁଇ ହାତ !
ଅଦ୍ଭୁତ ଭକତଲୀଳା କେ କରିବ ଗାନ,
ଯା ଚରଣଧୂଳି ପାଇଁ ଲୋଭୀ ଭଗବାନ ।
ଖାଦ୍ୟ ପାନ ସ୍ନାନ ଧ୍ୟାନ କେହି ନ ଜାଣଇ,
ଲଳିତା ନ ଜାଣେ କିଛି, କାହୁଁ ସେ ଚଳଇ ।
ବୃଦ୍ଧ ଜଣେ ଦେଇଯାଏ ରୁଟି ତରକାରି,
ଲଳିତା ଭକ୍ଷଇ, ପିଏ ଯମୁନାର ବାରି ।
ବାରେକ ମାତର ନିତ୍ୟ, ଯୁଟଇ ଆହାର,
ଆହାର କି ହେବ, ସେ ତ ମହାଭାବେ ଭୋର ।

ହନୁମାନ ଦଉମାଳା ସଦା ଗଳେ ଧରେ,
ଦ୍ୱାଦଶାକ୍ଷର ବଦନଁ ନିରନ୍ତର ସ୍ଫୁରେ ।
ନୟନ ସର୍ବତ୍ର ଦେଖେ ଶ୍ରୀକୃଷ୍ଣ ସ୍ୱରୂପ,
କର୍ଣ୍ଣ ଶୁଣେ ବଂଶୀବାଣୀ, କୃଷ୍ଣନାମ ଜପ ।
ସର୍ବନାମ ରୂପ ହେଲା କୃଷ୍ଣଦେହେ ଲୀନ,
ଷୋଳ ବର୍ଷ ଗଲା ସତେ ଯେସନେ ଏକ କ୍ଷଣ ।
ଲଳିତାର କୃଷ୍ଣପଦେ ତନ ମନ ଲୟ,
ଏକ ଭାବେ, ଏକ ରସେ କଟିଲା ସମୟ ।
ଲଳିତାଚରଣ ହେଲା ଦ୍ୱିତୀୟ ଲଳିତା,
କୃଷ୍ଣପଦେ ସଦା ରତ, କୃଷ୍ଣରେ ମୋହିତା ।
ଦିନେ ବଂଶୀଧ୍ୱନି ଉଠେ ବୃନ୍ଦାବନ ପୂରି,
ଗୋଟି ଗୋଟି ଡାକେ ବଂଶୀ ଗୋପୀଙ୍କୁ ହକାରି ।
ଲଳିତାର କର୍ଣ୍ଣେ ବାଜେ ମୁରଲୀ ନିସ୍ୱନ,
ବିବଶ ଲଳିତା, ତରି- ଲା ତନ ମନ ।
ଅଷ୍ଟ ସଖୀ ମଧ୍ୟେ ଯାଇ ରସେ ହେଲା ଯୋଗ,
ଷୋଳସହସ୍ର ଗୋପୀପ୍ରାଣେ ମହା ଅନୁରାଗ ।
ଧନ୍ୟ ଯାର କର୍ଣ୍ଣେ ବାଜେ ବଂଶୀ ଆବାହନ,
ପାଗଳ ହୋଇଣ ଖୋଜେ ଶ୍ରୀ ନନ୍ଦନନ୍ଦନ ।
ଛିଣ୍ଡି ଯାଏ ପରାଣର ସକଳ ବନ୍ଧନ,
ଉଦାର ଆତ୍ମସ୍ୱରୂପ କରେ ଆସ୍ୱାଦନ ।
ବାଇଫଳ ଖାଇ ଯେସନେ ଲୋକ ହୁଏ ବାଇ,
ପାଗଳ ଲଳିତା ଭଲ ମନ୍ଦ ନ ବୁଝଇ ।
ରାସମଣ୍ଡଳୀରେ ଯାଇଁ ହୋଇଲା ମିଳିତ,
ଶ୍ରୀକୃଷ୍ଣ ଇଙ୍ଗିତେ ସଖୀ ଲଳିତା ଜାଗ୍ରତ ।

ଲଳିତାଚରଣେ ଦେଲେ ନିଜ ଅଙ୍ଗେ ସ୍ଥାନ,
ଲଳିତାରେ ମିଶିଗଲି ଲଳିତାଚରଣ ।
କି ସ୍ୱରେ୍ୟ ପାଇଲି ଶ୍ରେଷ୍ଠ ପ୍ରଣୟିନୀ ପଦ,
ଚରଣର ନିତ୍ୟ ସେବା, ଅପୂର୍ବ ସମ୍ପଦ !

× × × ×

ଜୟ ହେ ଅମୃତଦାତା ! ଜୟ ଭକ୍ତଧନ !
ମଧୁର ଏ ପ୍ରୀତି-ରସ ବୁଝିବ କି ପ୍ରାଣ ?
ବାଜିବ କି କର୍ଣ୍ଣେ ବଂଶୀ କାଟିବ ବନ୍ଧନ,
ଫଗୁଣେ ରାସ ରଚିବ ହେ ନନ୍ଦନନ୍ଦନ !

---

## ମାଛୁପାଟିରୁ 'ଭଗବାନ'

ଓଡ଼ିଶାର ଲୋକସିଦ୍ଧ ସାଧକଙ୍କ ଘର,
ବିଜେ ନୀଳକନ୍ଦରରେ ପ୍ରଭୁ ଚକ୍ରଧର ।
ମର୍ତ୍ତ୍ୟ ବଇକୁଣ୍ଠ ସେ ତ ଯମ ଯାଏ ଡର,
ମୁକତି ମିଳଇ ହେଲେ ଭୂମି ଆଶ୍ରା କର ।
ପଦ୍ମରେ କେଶର ସର ଜଗନ୍ନାଥ ପୁରୀ,
ବିଶାଳ ଓଡ଼ିଶା ଦେଶ ପ୍ରଧାନ ନଗରୀ ।
ପୁରୀରୁ ଉତ୍ତରେ ଦଶ କୋଶେ ଅଛି ରହି ।
ପିପିଲିଯାତ୍ରୀଙ୍କ ପାଇଁ ହାଟଟିଏ ସେହି ।
ରଘୁଆ କେଉଟ ରହେ ବିରଚି କୁଟୀର
ପତ୍ନୀ, ମାଆ ବୁଢ଼ୀ ହେନ ତିନ ପରିବାର ।

ମାଛ ଧରେ ବିକେ ନିତି ଚଳାଏ ଜୀବିକା,
ନିରନ୍ତର ଜଗନ୍ନାଥେ ନିର୍ଭର ତା ଏକା ।
ପୂର୍ବ ଜନ୍ମ ପୁଣ୍ୟ ଯୋଗ ଅଟେ ସେ ଭକତ,
ମାୟା କପଟ ନ ଜାଣେ କଥା କହେ ସତ ।
ମାଛ ମାରେ, କିନ୍ତୁ ମନେ ବଡ଼ ସନ୍ତର୍ପଣ,
ଧିକ, ଧିକ ପ୍ରଭୁ ଦେଲେ କେଉଟଜୀବନ !
ଦୁଃଖ ହୁଏ ସତ, କେଉଁ ଘୁଞ୍ଚିବ ବେଉସା ?
ବୃଦ୍ଧ ମାତା, ପତ୍ନୀର ସେ ଏକଇ ଭରସା ।
ଶୁଦ୍ଧ ବିପ୍ରେ ଗୁରୁ କରି ନେଲା ଧର୍ମଦୀକ୍ଷା,
ସ୍ନାନ ପୂଜା ନାମ କରେ ମାନି ଗୁରୁ ଶିକ୍ଷା ।
ତାର ଶୁଦ୍ଧପ୍ରାଣେ କ୍ରମେ ଜ୍ଞାନ ହେଲା ଜାତ,
ଘଟେ ଘଟେ ନାରାୟଣ ହେଲା ଅନୁଭୂତ ।
ମାଛ ମାରି ଯିବା କ୍ରମେ ହୋଇଲା ଦୁଃସହ,
ବିଷ୍ଣୁ ନାମ ଜପି ନେତ୍ରୁ ଗଡ଼ାଇଲା ଲୁହ ।
ନ ଯାଏ ସେ ମାଛ ଧରି, ବସି ରହେ ଘରେ,
ସଞ୍ଚୟ ତ ଶେଷ ହେଲା ଦିନ ଦୁଇଟାରେ ।
ମାତା ପତ୍ନୀ ଦେଲେ ଗାଳି, କଲେ ତିରସ୍କାର,
ବଡ଼ କଷ୍ଟେ ଜାଲ ଧରି ହେଲା ସେ ବାହାର ।
ପୋଖରୀରେ ପାତେ ଜାଲ ଜଗନ୍ନାଥ ସ୍ମରି,
ପଡ଼ିଲା ବିଶାଳ ରୋହି ଭାଗ୍ୟକୁ ତାହାରି ।
ରୋହି ଦେଖି ନାଚେ ରଘୁ, ବହେ ଅଶ୍ରୁଧାର,
ଏ ତ ଆଦ୍ୟ ଅବତାର ! ପ୍ରଭୁ ପରାତ୍ପର !
କହେ, "ମତ୍ସ୍ୟରୂପଧାରୀ ! ଶୁଣ ଶୁଣ ହରି,
ମାରୁଅଛୁ ମୋତେ ଦୁଃଖେ ଧୀବର ତୁ କରି ।

ମାଛମରା ଗୁଡ଼ ଆଜ କି ଅଛି ଉପାୟ,
କ୍ଷୁଧାରେ ଜନନୀ ପତ୍ନୀ ଅଛନ୍ତି ଅଥୟ ।
ଧରିଛି, ମାରିବ ତୋରେ ଦେଇଛୁ ବେଉସା,
ମତ୍ସ୍ୟ ହୁଅ, ପ୍ରଭୁ ହୁଅ ଗୁଡ଼ ପ୍ରାଣ ଆଶା !
ଲୁଟେ ଗଲା ଆଣେ, ହାତେ ମାଛ ଦୃଢେ ଧରି,
ମାଛ କହେ, "ଭଗବାନ ! ରକ୍ଷା କର ହରି !"
"ମାଛ କି କହଇ କଥା ! କି ମଧୁର ସ୍ୱର,
ଏ ସ୍ୱର ଯାହାର ସେ ତ ତ୍ରିଲୋକସୁନ୍ଦର
ସେ ତ ନଟବର ଶ୍ୟାମ ମାଳାଦ୍ରି ବିହାରୀ,
ସେ ତ ଭକ୍ତଜନ-ସଖା ଦୀନବନ୍ଧୁ ହରି ।"
ଉଦୁଆ ଚକିତ ପ୍ରାଣ ଆନନ୍ଦରେ ଭରି,
ଗଲା ବରୁଣେଇ ବନେ, ପର୍ବତ ଚଢ଼ିଲା ।
ଦେଖିଲା ଝରଣା ଝରେ, କୁଣ୍ଡ ସ୍ଥାନେ ସ୍ଥାନେ,
ଭଲ କୁଣ୍ଡ ବାଛି ସେହି ରଖିଲା ଯତନେ ।
ତକାପାଣ୍ଡ ବସିଗଲା ସୁଦୃଢ଼ ଆସନେ,
ମାତା ପତ୍ନୀ ଦୁଃଖ, ନିଜ କ୍ଷୁଧା ନାହିଁ ମନେ ।
ନେତ୍ରୁ ଅଶ୍ରୁଧାର ଝରେ କରଇ କାକୁତି,
"ମାଛପେଟୁ କହୁ କଥା, ଦେଖାଅ ମୂରତି ।
ତୋର 'ଭଗବାନ' ସ୍ୱର ଆହା କି ମଧୁର,
ସ୍ୱରୁଁ ବଳି ମୂରତି ତ ଥିବ ମନୋହର !
ହେ ମନମୋହନ ସୁଦ- ର୍ଶନ ଦିଅ ଦେଖା,
ଯାଏ ସରି ଦାସ, ପ୍ରାଣ ନ ସହେ ଉପେକ୍ଷା ।
ଚଡ଼ ମାଂସ ଅସ୍ଥି ଏଥି ଖସିପଡ଼ୁ ତଳେ,
ଦେଖେ ମୁଁ ମାଳଶିରିଙ୍କୁ ଆସୁନ କି ବେଳେ !"

ତିନି ଦିନ ତିନି ରାତି    ଉପୋସନେ ତହିଁ,
ତିନି ବୁନ୍ଦା କରି ଜଳ    ରଘୁ ନ ଘେନଇଁ ।
'ଜଗବନ୍ଧୁ, ଜଗବନ୍ଧୁ'    ରଟଇ ବଦନ,
ଅନ୍ତରରେ ଜଗବନ୍ଧୁ    ରୂପେ ଅଛି ଧ୍ୟାନ ।
ନୟନୁ ଲୋତକ ବହେ    ଭାଗୀରଥୀଧାର !
କି ଯୋଗୀ ସାଜିଲୁ ରଘୁ    କେଉଠି ତୁ ପର !
ଭୁଲିଲେ ଛପନଭୋଗ    ଟଳିଲା ଆସନ,
ଧନ ଧନ ଭକ୍ତଡ଼ାକେ    ପରାଣ ଉଛନ୍ନ !
ମାଳାଦ୍ୱ ବରଜ ବନ୍ଧୁ    ଧରି ବିପ୍ର ବେଶ,
କମ୍ପେ ବୃଦ୍ଧ ଅଙ୍ଗ, ରଘୁ    ପାଶେ ପରବେଶ ।
ବୃଦ୍ଧ—କିଏ ରେ ତପସ୍ୱୀ, ତୋର    କେଉଁ ଦେଶେ ଘର,
କେତେ କାଳୁଁ ଧରିଛୁ ଏ    ତପସ୍ୟା କଠୋର ?
ସୁନା ଦେହ କରୁ ଚୂନା,    ସାରୁ ତୁ ଜୀବନ,
ବ୍ରାହ୍ମଣ ଦେଖି ରଘୁଆ    କରଇ ପ୍ରଣାମ ।
ରଘୁଆ—ଯାଆନ୍ତୁ ଆପଣା କାମେ    ବ୍ରାହ୍ମଣ ଗୋସାଇଁ,
ଲଭ ନାହିଁ, ସାଧନାରେ    ବୃଥା ବାଧା ଦେଇ ।
ମୃଦୁହାସେ ଫୁଟେ ମୁଖୁଁ    ବଚନ ମଧୁର,
ଭକ୍ତର ଦୃଢ଼ତା ପ୍ରଭୁ    କରନ୍ତି ତଉଲ ।
ବୃଦ୍ଧ—ଯାଉଛି ଚାଲି ମୁଁ ବାପା !    ଯଦି ନ ରୁଚଇ,
ଏ ବୃଦ୍ଧ ବ୍ରାହ୍ମଣ କଥା,    ତୁ କି ହେଲୁ ବାଇ,
ମାଛି କି କହଇ କଥା    ନାହିଁ ତୋ ବିଚାର ?
ନ ଖାଇ ନ ପିଇ, ଆତ୍ମ-    ହତ୍ୟା କରୁ ସାର ।
ସହଜ ନୁହେ ରେ ବାପା    ବନ୍ଧୁଙ୍କ ଦର୍ଶନ,
ଏ ବଡ଼ ଦୁର୍ଗମ ପନ୍ଥା    ହଟେ ଯୋଗୀଜନ ।

ମାତାପତ୍ନୀ ଉପବାସେ ମରିବେ ତୋ ସେନ,
ତୋର ଅବଗୁରେ ନାଶ— ଅଛୁ ତିନ ପ୍ରାଣୀ !
ବ୍ରାହ୍ମଣର କଥା ଶୁଣି ରଘୁଆ ଚକିତ,
ସବୁଜାଣ କିଏ ବିପ୍ର ! ଲାଗେ ଅଦଭୁତ !
ମାଛ କହିବାର କଥା କାହୁଁ ଏ ଜାଣିଲ,
ମାତା ପତ୍ନୀ ଛନ୍ତି ଘରେ ଜାଣି ତଆରିଲ !
ଏ ତ ନିଶ୍ଚେ ଭଗବାନ ପ୍ରଭୁ ପରମେଶ,
ଭକ୍ତର ପରୀକ୍ଷା ପାଇଁ ଏଥି ପରିବେଶ ।
ରଘୁଆ—ଗୋସାଇଁ ! ଧୀବର ପୁଅ, ଅଳପ ମୋ ଜ୍ଞାନ,
ଜାଣେ 'ଘଟେ ଘଟେ ରହି- ଛନ୍ତି ନାରାୟଣ' ।
ଜନମିଛୁ ପାପୀକୁଳେ ଜୀବ ମାରେ ନିତ,
ମାଛ ଭୁଞ୍ଜେ ଦୟାମୟ ତେଣୁ ନିବାରନ୍ତ !
ଆପଣ ତ ଅନ୍ତର୍ଯ୍ୟାମୀ, ସବୁ କଥା ଜାଣ,
ନାଁ ଛିଣ୍ଡେ ଅନ୍ତରେ ରହି ଭାସିଲ ବଚନ ।
ଛଦ୍ମ ଗ୍ଳାନି, ବନ୍ଧୁ ବାରେ ଦିଅ ତ ଦର୍ଶନ,
ଧନ୍ୟ ହେଉ ପାପୀ, ତୁ ତ ପତିତପାବନ ।
ତରଳିଲା ହୃଦ, ବନ୍ଧୁ ଭକ୍ତ ଘଟେ ଭେଳା,
ଭକ୍ତ ଆଗେ ଚତୁର୍ଭୁଜେ ବିଜେ ଚକାଡ଼ୋଳା ।
ନବଘନ-ଶ୍ୟାମ ତନୁ ସଉନ୍ଦର୍ଯ୍ୟଭରା,
ମଦନମୋହନ ରୂପ ପାପତାପହରା ।
ବାମନର ହାତେ ସ୍ୱର୍ଗ ଚନ୍ଦ୍ର ଦେଲେ ଧରା !
କୃତକୃତ୍ୟ କଇବର୍ତ୍ତ ଘଟେ ଆତ୍ମହରା ।
ଟେକା ବୁଡ଼ଯାଏ ଛୁଇଁ ଚରଣକମଳେ,
ଆଦରେ ଟେକିଣ ପ୍ରଭୁ ଧରନ୍ତି ତ କୋଳେ !

ଶିରେ ହସ୍ତ ବୁଲାଇଣ ଦିଅନ୍ତି ଆଶିଷ,
"କାଳ କାଳ ଲଭ ବାବୁ ଭକତି ସରସ ।
ଆଉ ତୋର ଇଚ୍ଛା ବର ଥିଲେ ମାଗି ନେନ ;"
ରଘୁ କହେ, "କି ମାଗିବି ? ତୋର ଦରଶନ ।
ଆଜ୍ଞା ଭକ୍ତ ଆଶୀର୍ବାଦ, ଯଥେଷ୍ଟ, ଯଥେଷ୍ଟ !
ଇଚ୍ଛା ଯେବେ, ହୃଦୁ ମୋର ହଂସାଭାବ କାଠ ।
ରସନା ମୋ ରଟୁଥିବ ମଧୁମୟ ନାମ,
ଦୁଇ ଚକ୍ଷୁ ଦେଖୁଥିବ ରୂପ ଅଭିରାମ ।
ଯିବ ଏ ପରାଣ ଛାଡ଼ି ଏଇ ଇଚ୍ଛା ବର ;"
'ତଥାସ୍ତୁ' କହିଣ ବନ୍ଧୁ ହୋଇଲେ ଅନ୍ତର ।
ବନ୍ଧୁଙ୍କ ଦର୍ଶନେ ଭବ- ବନ୍ଧ ଗଲା ଛୁଟି,
ଫେରଇ ଆନନ୍ଦେ ରଘୁ ବନ୍ଧୁନାମ ରଟି ।
ଭକତର ଅସାଧ୍ୟ ତ ନାହିଁ ଏ ମହୀରେ,
ଅଣିମାଦି ସିଦ୍ଧି ଆସି ଲୋଟନ୍ତି ପାଦରେ
ପ୍ରେମେ ଲକ୍ଷ୍ମୀପତି ଯାର ହୋଇଅଛି ବଶ,
ଧରାର ସମ୍ପଦେ ତାର କାହିଁ ହେବ ଆଶ ?
ନାମ ରଟି ରଘୁ ଗଲେ ପ୍ରେମେ ଟଳଟଳ,
ନୟନ-ଜ୍ୟୋତିରେ ଯାଏ ଅନ୍ତର ତରଳ ।
ରଘୁଆକୁ ଦେଖି ଗ୍ରାମ- ଲୋକେ ହେଲେ ଖୁସି,
ବଡ଼ ଆପଣାର ଦିଶେ, କହନ୍ତି ପ୍ରଶଂସି ।
ନାମ ରଟି ରଘୁ ଦାଣ୍ଡେ ନିତି ଭିକ୍ଷା କରେ,
କିବା ସେ ମଧୁର ଧ୍ୱନି ପ୍ରାଣ ମନ ହରେ ।
ଫଳମୂଳ ଲୁଗାପଟା ଯାହା ଲୋଡ଼ା ତାର,
ନ ମାଗୁ ଦିଅନ୍ତି ଲୋକେ, ନ ଡ଼ିଠ ଦୁଆର ।

ବ୍ରହ୍ମାଣ୍ଡ ଭଣ୍ଡାର ଘର, ବିଶ୍ବତି କରତା,
ଯେ ଅନ୍ତ ଭକତେ ଡାକ ସେ ତ ଫଳଦାତା ।
ବିଷ୍ଣୁ ନାମ କହି ରଘୁ କରଇ କଲ୍ୟାଣ,
କେହୁ ଧୂଳି ନିଏ କେହୁ ବନ୍ଦଇ ଚରଣ ।
ହରଷେ କାଟଇ କାଳ ମାତାପତ୍ନୀ ସେନି,
ସଂକୀର୍ତ୍ତନେ ଯାପେ ରଘୁ ଦିବସ ରଜନୀ ।
ମାତା ପତ୍ନୀ ସେନି କେବେ ସଂକୀର୍ତ୍ତନେ ମାତେ,
ଅଖଣ୍ଡ ଭାବରେ କେତେ ଦିନ ରାତି ବିତେ ।
କେବେ ନାଚେ, କେବେ କାନ୍ଦେ, କେବେ ତଳେ ଗଡ଼େ,
ଘଡ଼ି ଘଡ଼ି ଧରି ତାର କେବେ ଚେତାବୁଡ଼େ !
ରଘୁଆର ବଢ଼େ ଭାବ, ପୁଣ୍ୟ ଧର୍ମ ବଳ,
କହିଲା, ଯା ସତ ହେଲା, ତା କଥା ଅଟଳ ।
ବାକ ସିଦ୍ଧି ଦେଲେ ବିଷ୍ଣୁ କେଉଟ-ଜୀବନେ,
ଅର୍ଦ୍ଧଜ୍ଞାନୀ ବୋଲି ଖ୍ୟାତି ଲଭିଲା ଭୁବନେ ।
ଦୂର ଦୂରାନ୍ତରୁ ଆସି ଜମା ନରନାରୀ,
ଭବିଷ୍ୟତ ଭଲ ମନ୍ଦ ବୃତ୍ତାନ୍ତ ପଚାରି ।
କିଏ ସାଧୁ ଆଶୀର୍ବାଦେ ଲଭଇ ସନ୍ତୋଷ,
ରଘୁଆ-ଚରଣ ଧୂଳି ମଣଇ ବିଶେଷ ।
ସଂକୀର୍ତ୍ତନେ ପଡ଼େ ବାଧା ରଘୁ ମନେ ରୋଷ,
ଗ୍ରାମ ଜନପଦ ଛାଡ଼ି ବନେ କଲା ବାସ ।
କୁଟୀର ବିରଚି ରଘୁ ରହେ ଘୋର ବନ,
କାହୁଁ ଯୁଟେ ଆସି ଅନ୍ନ ପ୍ରାଣୀର ଭୋଜନ ।
ଭୋଜନେ ନ ଯାଏ ମନ, ଧୂଳି ଦେହ ଭୁଲେ,
ବିଷ୍ଣୁ ନାମେ ରତ, ବିଷ୍ଣେ ସଂକୀର୍ତ୍ତନ ହେଲେ ।

ଅନେକ ନୀଳାଦ୍ରିନାଥ ଧ୍ୟାନରେ[illegible] କରି,
କହନ୍ତି ଭୁଞ୍ଜିବେ ଅନ୍ନ ତା କୁ[illegible]ରେ ଆସି ।
ପରଦନ ଭକ୍ଷ୍ୟଦ୍ରବ୍ୟ ରାନ୍ଧି [illegible] ଥୋଇ,
ଭାବେ ଭୋଳା ରଘୁ ଡାକେ “ଆସ [illegible]ଗ୍ରାହୀ !
ନ ରୁଚେ ଛପନ ଭୋଗ, ଆସ ଚକାଡୋ[illegible] !
ଘେନ ହୀନ ଶାଗ ଭାତ ରଚ ତୁମ ଲୀଳା ।”
ଭାବଭୋଗୀ ପ୍ରଭୁ କର୍ଣ୍ଣେ ବାଜିଲା ସେ ବାଣୀ,
ନୀଳାଦ୍ରି ବରଜ ବଜେ କୁଟୀରେ ସେକ୍ଷଣି !
ରଘୁ ଗୁଣ୍ଡା ବଳଦ ଏ ଭୁଞ୍ଜନ୍ତି ଶ୍ରୀହରି,
ଦେଖୁଛନ୍ତି ମ.ତାପନ୍ନୀ ପ୍ରେମେ ଅଶ୍ରୁ ଢାଳି ।
ଭୋଗମଣ୍ଡପ ସମସ୍ତ ନୀଳାଦ୍ରି ମନ୍ଦରେ,
ବିବିଧ ବ୍ୟଞ୍ଜନ ବଡ଼ା ଅନ୍ନ ଡାଲି ଭୁଲେ ।
ଖିରିପିଠା କାନ୍ତି ଝିଲି ଲଡୁ ରସାବଳୀ,
ମାଲପୁଆ ଅବ୍ୟ ଭୋଗ ତାକୁ ତାକୁ ବଳି !
ହସ୍ତରେ ପାଣି ତୁଳସୀ ବଡ଼ପଣ୍ଡା ଥିବେଁ,
ଅଦଭୁତ, ଦର୍ପଣରେ ମୂର୍ତ୍ତି ଦୃଶ୍ୟ ନୁହେ !
“କାହାରେ ନୈବେଦ୍ୟ ଦେବ” ପଣ୍ଡାଙ୍କରେ ପାଟି,
“କେ ପ୍ରମାଦ କଲ ହେଲ ବଡ଼ ଭୋଗ ମାଟି !”
ନୃପଙ୍କୁ ଖବର ଗଲା ଆସନ୍ତି ନୃପତି,
ଗରୁଡ଼ ଖମ୍ବ ପାଖରେ କରନ୍ତି ପ୍ରଣତି ।
ସାଷ୍ଟାଙ୍ଗେ ପ୍ରଣାମ ବେଳେ ଲାଗେ ଘୁଇନଦ,
ସ୍ୱପ୍ନରେ କହନ୍ତି ପ୍ରଭୁ, ନାହିଁ ପରମାଦ ।
ଦୁଃଖ କର ନାହିଁ, ମୁଁ ତ ନାହିଁ ନୀଳାଚଳେ,
ଭକ୍ତହସ୍ତେ ଭୁଞ୍ଜୁଅଛି ପିପିଲି ଅଞ୍ଚଳେ ।

ରଘୁଆ କୈବର୍ତ୍ତ ସେ ତ ବନେ ଅଛୁ ରହି,
ଭିକ୍ଷାଟନ୍ନ କାଟୁଛୁ ଦିନ ବଡ଼ କଷ୍ଟ ସହି ।
ଭକତରେ ବାନ୍ଧିଅଛୁ, ମୁଁ କି ଛାଡ଼େ ତାକୁ !
ନିକଟେ ରଖାଅ ନେଇ ଯିବ ମନ୍ଦିରକୁ ।
ମାଡ଼ାପନ୍ନୀ ଯିବେ ସଙ୍ଗେ, ତିନି ଜଣ ପାଇଁ,
ଭୋଜନ, ବାସ ଯୋଗାଅ ତେବେ ଯିବ ମୁହିଁ ।
ବେଗଗାମୀ ଅଶ୍ୱେ ରାଜା କରନ୍ତି ଗମନ,
କୈବର୍ତ୍ତ କୁଟୀରେ ଯାଇ ମିଳିଲେ ବହନ ।
କୁଟୀରେ ଡାକନ୍ତି ରଜା ପଡ଼ିଛୁ ଦୁଆର,
ତିନି ପ୍ରାଣୀ ସବେ-ସେଲା ନ ଶୁଣନ୍ତି ଗୀର ।
ଦୁଆର ଭାଙ୍ଗି ନୃପତି ପ୍ରବେଶ କୁଟୀରେ,
ଶ୍ରୀପତି ଭୋଜନେ ରତ ପାଦ ନାହିଁ ଟଳେ ।
ଉଠାଇଲେ ଜଗନ୍ନାଥ, ସରିଲା ଭୋଜନ,
ନାରାୟଣ ପଣ୍ଡା ଆଗେ ଦେଲେ ଦରଶନ ।
ଜଗନ୍ନାଥ ଅନ୍ତର୍ହିତ ରଘୁଆ ବିକଳ,
ମୀନ କି ସେ ଛଟପଟ ଛାଡ଼ି ଗଙ୍ଗାଜଳ !
ଭକତଚରଣ-ଧୂଳି ଧରନ୍ତି ନୃପତି,
କହନ୍ତି, ମୁଁ ଧନ୍ୟ ହେଲି, ଧନ୍ୟ ତୋ ଭକତି !
ରଘୁଆ ନୃପତି କୋଳେ ନୃପ ଅଶ୍ରୁ ଢାଳେ,
କହନ୍ତି, "ତୋପରି ଭକ୍ତ ନାହିଁ ମହୀତଳେ ।
ଚାଲ ବାବୁ ! ସଙ୍ଗେ ମୋର ମାଡ଼ାପନ୍ନୀ ଆଣ,
ବାସ ଯୋଗାଇବ ହେବ ପ୍ରସାଦ ଭୋଜନ ।
ନିତି ନୀଳଚକ୍ର ସେବ କର କ୍ଷେତ୍ରବାସ ।
ଅନ୍ତେ ହସି ହସି ଯାଇ ବଇକୁଣ୍ଠେ ବସ ।"

ଚଳନ୍ତ ବସ୍ତ୍ର, ଅଚଳନ୍ତ ରାଜା ଗଜପତି,
ଶ୍ରୀମୁଖ ଆଜ୍ଞା ଲଙ୍ଘିବ କାହାର ଶକତି ।
ରଘୁଆ ଭାବଇ "ସବୁ ଜଗନ୍ନାଥ ମାୟା !
ଭକତଠାରେ ପ୍ରଭୁର କେତେ ବଡ଼ ଦୟା !"
ରାଜା ଗଲେ ଚଳି, ରଘୁ ଧରିଲା ସଡ଼କ,
ସଡ଼କରେ ପଡ଼େ ଭିଡ଼ ଧାଇଁଛନ୍ତି ଲୋକ ।
ମହାଯୋଗୀ ଯାଉଛନ୍ତି ଛାଡ଼ିଣ ଅଞ୍ଚଳ,
ଚତୁର୍ଦ୍ଦିଗ ଲୋକେ ଢାଳୁ- ଛନ୍ତି ଅଶ୍ରୁଜଳ ।
ଦଳ ଦଳ ହୋଇ ଲୋକ କରି ସଙ୍କୀର୍ତ୍ତନ,
ଭେଟି ଭକ୍ତେ କରୁଛନ୍ତି ଚରଣ ବନ୍ଦନ ।
ଆଲିଙ୍ଗନ ଆଶୀର୍ବାଦ କରି ରଘୁ ଚଳେ,
ମାତା ପତ୍ନୀ ସଙ୍ଗେ ରଘୁ ସଙ୍କୀର୍ତ୍ତନ ଦଳେ ।
ଜଗନ୍ନାଥ ସଡ଼କରେ ଗୁଣ୍ଡିଚାର ଭିଡ଼,
ପିପିଲିକା ପ୍ରାୟ ଯାଏ ଲୋକ ନାହିଁ ଛିଡ଼ ।
ଶ୍ରୀକ୍ଷେତ୍ରେ ଭକତେ ଛାଡ଼ି ଲେଉଟିଲେ ଲୋକେ ।
କୁଣ୍ଡିତ ଯିବାକୁ ଛାଡ଼ି ଝୁରନ୍ତି ଲୋକକେ ।
ଦକ୍ଷିଣ ପାର୍ଶ୍ୱେ ଯାଇଁ ରହିଲେ ଭକତ,
ନୀଳାଚଳେ ତେବେ ଯାଇ ସ୍ଥିର ଜଗନ୍ନାଥ ।
ଅନ୍ତେ ବଇକୁଣ୍ଠ ଯିବେ ହେଲା ନାହିଁ ମନ,
ନିମୂର୍ତ୍ତିରେ ମିଶିଗଲେ ଭକ୍ତ ତିନି ଜଣ !

× × ×

ଜୟ ଜୟ ଜଗନ୍ନାଥ ଭକତ ଶରଣ !
ଜୟ କଇବଲ୍ୟଦାତା ଜୟ ନାରାୟଣ !

ଏ ତ ପ୍ରଭୁ ! ମହାପାପୀ ବଳେ ଅଜାମିଳେ !
ହିଂସା କି ପାରିବୁ କାଟି ଅନ୍ତରରୁ ଟଳେ ?
ଦୁଷ୍କୃତ ପ୍ରାଣରୁ ପାପ ନ କଲେ ଖଣ୍ଡନ,
ପତିତପାବନ ବାନା ସିନା ଅକାରଣ !



# ଭଉଣୀ ସରସ୍ୱତୀ

ସରସ୍ୱତୀ ପିତାମାତା ଆଦରର ଧନ,
ଶ୍ରୀକାନ୍ତି ଜନନୀ ନାମ, ପିତା ମତିମାନ ।
ପ୍ରଚୁର ସମ୍ପଦ, ନିତି ଅତିଥି ସତ୍କାର,
ଘର ଭିତରେ ବିରାଜେ ଗୋପାଳ ମନ୍ଦିର ।
ପୂଜକ ଶ୍ରୀ ଶ୍ରୁତଦେବ ନୈଷ୍ଠିକ ବ୍ରାହ୍ମଣ,
ବାତ୍ସଲ୍ୟ ଭାବେ ପୂଜନ୍ତି ଶ୍ରୀନନ୍ଦନନ୍ଦନ ।
ଜଡ଼ ସୁବର୍ଣ୍ଣ ପ୍ରତିମା ଶ୍ରୁତଦେବ ମନେ,
ଜୀବନ୍ତ ସଚ୍ଚିଦାନନ୍ଦ ଘନ ଭାବେ ଘେନେ ।
ତନୟ ପ୍ରାଣର ଜୀବନ, ଗୋପାଳେ ନନ୍ଦନ,
ଭାବେ କରେ ପୂଜା, ସ୍ନେହେ କରେ ସମ୍ଭାଷଣ ।
ମୂରତି ବିରାଜି ଦେବ ତନୟ ସୋହାଗେ,
ନାଚନ୍ତି, ବସନ୍ତି କୋଳେ, ହସନ୍ତି ସରାଗେ ।
ପ୍ରେମେ ଅଶ୍ରୁ ଢାଳେ ବିପ୍ର ଭାବେ ଆତ୍ମହରା,
ଗୋପାଳଙ୍କୁ କରିଥାଏ ପରାଣ ପସରା ।
ଛୋଟପିଲି ସରସ୍ୱତୀ, ଆସି ବସେ ପାଖେ,
ବ୍ରାହ୍ମଣର ଭୋଗରାଗ ପୂଜାବିଧି ଦେଖେ;
କର୍ପୂର ଝୁଣାଗୋଗୁଳ ପୂଜା ଉପଚାର,
କେତେ ସ୍ନେହେ ଆଣିଦିଏ ନୈବେଦ୍ୟ ସମ୍ଭାର ।

ହାତେ ତାଳି ଦେଇ କେବେ ନାଚେ ଉଚ୍ଛଳ,
ଗୋପାଳ ହଅନ୍ତି ତାଙ୍କୁ ଖେଳସାଥୀ ଭଲ।
ବ୍ରାହ୍ମଣର ଭକ୍ତିଭାବେ, ପୁଲକେ, ଲୋତକେ,
ସ୍ୱେଦ ସାତ୍ତ୍ୱିକ ବିକାରେ ବାଳିକା ଚମକେ।
ପୂଜା ଦେଖୁ ଦେଖୁ ତାର ଇଚ୍ଛା ହୁଏ ମନେ,
କହେ, ସେ କରିବ ପୂଜା ଅତିହିଁ ଯତନେ।
ନୈଷ୍ଠିକ ବ୍ରାହ୍ମଣ ହଏ ନାହିଁ ଅନୁମତି,
ଗୋପାଳଙ୍କୁ ପୁଅ ଭାବେ, କନ୍ୟା ସରସ୍ୱତୀ।
ଭାଇ ଭଉଣୀ ସମ୍ବନ୍ଧ ହେଲା ପକ୍କା,
ସରସ୍ୱତୀର ତୁଟିଲା, ଦେବତା ଆଶଙ୍କା।
ସରସ୍ୱତୀକୁ ହସିଲା, ବ୍ରାହ୍ମଣ ସୋହାଗ,
ଗୋପାଳ କୋଳରେ ବସି ଦେଉନ୍ତି ତା ଭୋଗ!
ଗୋପାଳ ଭାଇର ସଙ୍ଗେ ଖେଳିବାକୁ ମନ,
ଝିଅକୁ ବାରଣ କଲେ ନ ମାନେ ବାରଣ।
ନାଚନ୍ତି ବ୍ରାହ୍ମଣ ଆଗେ ସୁତସୁତା ଦୁଇ,
ଚକ୍ଷୁରୁ ଲୋତକ ଗଡ଼େ ଦ୍ୱିଜ ରହେ ଚାହିଁ।
ବାଳିକା ସେ ସରସ୍ୱତୀ, ସ୍ନେହ ଗୋପାଳରେ
ଖୁଆଏ ପିଆଏ ଶୁଦ୍ଧ ପ୍ରେମାଳାପ କରେ।
ଶ୍ରୁତଦେବ ଭାବେ ମନେ ସାର୍ଥକ ଜୀବନ,
ଝିଅଠାରେ ଭଗବାନ ଅତିହିଁ ପ୍ରସନ୍ନ।
ପିଲାଦିନୁ ସରସ୍ୱତୀ ବଡ଼ ବୁଦ୍ଧିମତୀ
ପିତାଙ୍କ ବଳ ବିପ୍ରରେ ଅତିହିଁ ଭକତି।
ଗୀତା ରାମାୟଣ ତତ୍ତ୍ୱ ପଚାରଇ ଦ୍ୱିଜେ,
ବାହ୍ମଲୀଳା ବଇଭବ ମନ ଦେଇ ବୁଝେ।

ବିପ୍ର କହେ, 'ଝିଅ ତୁମେ ବଡ଼ ଭାଗ୍ୟବତୀ,
ଗୋପାଳରେ ବାଳକାଙ୍କୁ କି ଶୁଦ୍ଧ ଭକତି !
ନଅ ବର୍ଷ ପିଲା ତୁ ତ ପାଇଲୁ ଦର୍ଶନ !
ଯୋଗୀର ଅଲଭ୍ୟ ମହା ତପସ୍ୟାର ଧନ !
ଝିଅ ଲୋ କରୁଛି ତୋତେ ବାରମ୍ବାର ମନା,
ନ ଜାଣିବେ କେହି ଭାଇ ଭଉଣୀ ଘଟଣା !'
ଶ୍ରାବଣ ପୂର୍ଣ୍ଣିମା ଦିନ ଗୋପାଳ ଶ୍ରୀହସ୍ତେ
ରକ୍ଷା-ଡୋର ବାନ୍ଧିଦେଲେ ଭଉଣୀର ହାତେ ।
ସରସ୍ୱତୀର ଗୋପାଳ ଭ୍ରାତୃଭାବେ ବଶ,
ଦିବସରେ ବହୁ ବାର ଖେଳ ରଙ୍ଗ ରସ ।
ପୂଜା ସାରି ଦ୍ୱିଜ ଘରେ ଯାଏ ନିତି ଫେରି;
ସରସ୍ୱତୀ ରହେ ସୁଖେ ମହର ଆଦରି ।
ଗୋପାଳ କହନ୍ତି ଦିନେ, "କିପାଁ ନାହିଁ ଚିନ୍ତା;
[illegible] ଘରେ କାଳ ରହେ କି ଦୁହିତା ?
ସରସ୍ୱତୀ ପାଇଁ ଖୋଜ ବେଗେ ଯୋଗ୍ୟ ବର,
ଦେଖୁଁ ଦେଖୁଁ ଭଉଣୀର ପୂରିଲା ଏଗାର !
ପାଖ ଗ୍ରାମେ ସୁଦର୍ଶନ ଧନିକର ସୁତ,
ସରସ୍ୱତୀ ପାଇଁ ରୂପେ ଗୁଣେ ଉପଯୁକ୍ତ ।"
ପିତାମାତା ଦ୍ୱିଜେ ମିଳି କଲେକ ବିଚାର,
ବିବାହ ନିବନ୍ଧ କଲେ ଦିନ ହେଲା ସ୍ଥିର ।
ଏତେ ହେଲା ସିନା କନ୍ୟା କେଭେ ନ ମଙ୍ଗଇ,
କହେ ଗୋପାଳଙ୍କୁ ଛାଡ଼ି କାହିଁ ଯିବ ନାହିଁ ।
ଗୋପାଳ କହନ୍ତି ସ୍ନେହେ, "ହେଲୁ କି ବାୟାଣୀ !
ମୁଁ ତ ପାଶେ ଯିବି ତୋର ଇଚ୍ଛା କଲା କ୍ଷଣି ।

ପବିତ୍ର ଗୃହସ୍ଥାଶ୍ରମ ତପସ୍ୟା କଠୋର
ପାଳିବାକୁ ଶୁଦ୍ଧପ୍ରେମେ ପତିକର ଧର ।”
ମହା ଆଡ଼ମ୍ବରେ ସରେ ସାତ୍ତ୍ୱିକ ବିବାହ,
ପିତାମାତା ନ ଜାଣନ୍ତି, କେ କରେ ନିର୍ବାହ !
କେତେ ନୂଆ ନୂଆ ବନ୍ଧୁ ଆସିଗଲେ ମିଳି,
ସରବେ କର୍ମକୁଶଳ ତାକୁ ତାକୁ ବଳି ।
ସୁନାରୂପା ଅଲଙ୍କାର ଯୌତୁକ ସମ୍ଭାର,
ଦେଖି ଲୋକେ ପ୍ରଶଂସନ୍ତି ଚକ୍ଷୁ ହୁଏ ସ୍ଥିର ।
ସକଳ ଲୋକଙ୍କ ପ୍ରଶଂସା ଶୁଣି ପିତାମାତା,
ହୁଅନ୍ତି ଲଜ୍ଜିତ, କହି ଧନ୍ୟ ତୁ ବିଧାତା !’
ତିନି ବର୍ଷ ପରେ କନ୍ୟା ଗୃହଯୋଗ୍ୟା ହେଲା,
ମହା ସମାରୋହେ ବାଳୀ ପତିଗୃହ ଗଲା ।
ଗୋପାଳ ଇଚ୍ଛାରେ ସବୁ ହୋଇଲା ପୂରଣ;
ନ ବାଛିଲେ କେହି ଦୋଷ, ନ ଦେଖିଲେ ଖୁଣ ।
ଗୋପାଳ ଗୁପତେ ଗଲେ ଭଗିମାଙ୍କ ଘରେ,
ସାନ୍ତ୍ୱନା ଦେଇ ଫେରିଲେ ତିନି ଦିନ ପରେ ।
ପତି ସୁଦର୍ଶନ ରୂପେ ଗୁଣେ ଅପ୍ରମିତ,
ସାଧୁ ନିଷ୍କପଟ ଶୁଦ୍ଧ ପୁରୁଷ ଉତ୍ତମ ।
ଅତୁଳ ବିଭବ ଘରେ ରହିଅଛି ପୂରି,
ଶାଶୁଶଶୁର ନୈଷ୍ଠିକ, ପୂଜନ୍ତି ଶ୍ରୀହରି ।
ସରସ୍ୱତୀ ଆନନ୍ଦରେ କଟାଇଲା ଦିନ,
ମଧ୍ୟେ ମଧ୍ୟେ ଗୋପାଳଙ୍କ ସହିତ ମିଳନ ।
ମିଳନରେ ଶ୍ରୀମୁଖରୁ ତତ୍ତ୍ୱ ଉପଦେଶ,
ପାଇଣ ଜୀବନ କରେ ବିଶୁଦ୍ଧ ନିର୍ଦ୍ଦୋଷ ।

ଗୋପାଳ ଭାଇଙ୍କୁ ଦିନେ    କହେ ସରସ୍ୱତୀ,
"ଭାଇ ! ମୋ ନ ଥିଲା ଜ୍ଞାନ    ଶ୍ରେଷ୍ଠ ପିଲା ଅତି,
ତୁମ ଶ୍ରେଷ୍ଠ ମୂର୍ତ୍ତି ଥିଲା    ହୃଦୟର ଧନ,
ପୂଜାରୀ କରନ୍ତି ପୂଜା    ଅତି ହିଁ ଯତନ,
ମୋତେ ଲାଗୁଥିଲା ତୁମେ    ସଦା ହସି ହସି,
ଭୋଗ ଖାଉଥିଲ ସୁଖେ    ଦ୍ୱିଜ କୋଳେ ବସି ।
ବାଳିକା ମୁଁ ଶ୍ରଦ୍ଧା ହେଲା    'ଦିଆନ୍ତି ମୁଁ ଭୋଗ,
ଧୂପ ଦୀପ ଦେଇ ତୋରେ    କରନ୍ତି ସରାଗ ।'
ଦ୍ୱିଜ ନିବାରିଲେ ମୋତେ    ବସେ ଜିଦ୍ ଧରି,
ପ୍ରାଣର ଶୁଦ୍ଧ ଆଗ୍ରହ    ନ ପାରେ ସମ୍ଭାଳି ।
ମୂର୍ତ୍ତି କହେ, 'ଶ୍ରୁତଦେବ !    କିପାଁ କର ମନା ?
ଭଉଣୀ ଭୋଗ ଲଗାଉ,    କରୁ ବନ୍ଦାପନା ।
ତା ହାତୁଁ ଭୋଗ ଖାଇବ    ମୋର ବଡ ମନ,
ଥାଆନ୍ତି ଆନନ୍ଦ ହେବ,    ନକର ବାରଣ ।'
ଶୁଣିଲେ କି ନାହିଁ ଦ୍ୱିଜ,    ପୂଜାଗୃହୁଁ ଗଲେ,
'ଦିଅ ତୁ ଲଗାଅ ଭୋଗ'    ମଧୁରେ କହିଲେ ।
ଭୋଗ ରଖି, ଆଗେ ମୁଁ ତ    ଟେର ଦେଲି ଟାଣି,
ଆସ ଖାଅ ଭୋଗ ପ୍ରେମେ    ଭାଷିଲି ମୁଁ ବାଣୀ ।
ନ ଶୁଣିଲ କଥା, ଭୋଗ    ନ କଲ ଗ୍ରହଣ;
କଷ୍ଟ ହେଲା ବଡ଼ ମନେ,    କଲି ମୁଁ କ୍ରନ୍ଦନ ।
ମୂର୍ତ୍ତିରୁ ବାହାରି ହେଲ    ବାହାରରେ ବଳେ,
ଭୋଗ ସରାଗରେ ଧରି    ଭୁଞ୍ଜିଲ ତ ନଜେ !
ଜୀବନର ସେ ଆନନ୍ଦ    ନ ଭୁଲିବ ଦିନେ,
ମୋ ଆଗ୍ରହେ ରାଖୀହାତେ    ବାନ୍ଧିଲ ଯତନେ ।

ତାପରେ ଲାଗିଲା ନିତି ନାଚ, ହସ, ଖେଳ,
ମୂଳକର କଥାପଡ଼େ କଟିଯାଏ ବେଳ ।
କଏ ତୁମେ ପ୍ରକୃତରେ ମୋତେ ନାହିଁ ଜଣା,
ଭାଇ ବୋଲି କଥା କହେ, ନାଚେ ଖେଳେ ସିନା !
ସେ ଭାଇ ସମ୍ପର୍କ ଦ୍ୱିଜ କରିଲେ ସ୍ଥାପନ,
ତାଙ୍କ ପୁଅ ଝିଅ ତେଣୁ ଆମେ ଦୁଇ ଜଣ !
କୃତ୍ରିମ ସମ୍ପର୍କ ଏତ ଗଢ଼ା ଭକ୍ତ ଭାବେ,
ମୁଁ ବୁଝୁଛି ଏଥିରେ ତ ସତ ନାହିଁ ଲବେ ।
ତୁମର ଇଚ୍ଛାରେ ହେଲା ସଂସାର-ବନ୍ଧନ,
ତୁମେ ମୋ ସଂସାରେ ସୁଖ, ପ୍ରାଣପ୍ରିୟ ଧନ ।
ନିକଟୁ ନିକଟ ଏତେ କେବେ ନ ରହିଲି;
ବାଳଭାବ ଧରି 'ଭାଇ ! ଭାଇ !' ମୁଁ ଡାକିଲି !
ବାପାମାଆ ପୂଜନ୍ତି ତ କହି ଭଗବାନ,
ମୂର୍ତ୍ତି ଛଡ଼ା, ଦିନେ ନାହିଁ ମିଳେ ଦରଶନ !
ବତାଅ, ବତାଅ ଭାଇ, ଛୁଟାଅ ଅଜ୍ଞାନ,
ମୋପରାଣ ଭାଇ ତୁ କି ସତେ ଭଗବାନ !
ଭାଇ ବୋଲି ନ ଡାକିଲେ ପରାଣ କାତର,
ଆପଣାର ରହସ୍ୟ ଆପେ ବୁଝାଅ ଚଞ୍ଚଳ ।"
ହସିଣ ଗୋପାଳ ଭାଇ, କହନ୍ତି, 'ଭଉଣୀ !
ମୋ ତତ୍ତ୍ୱ ବୁଝିବୁ ତୁହି, ହେଲୁକି ବାୟାଣୀ !
ତୋର ମୁଁ ପ୍ରାଣର ଭାଇ, ନ କର ସନ୍ଦେହ,
ବିଶ୍ୱଜନ ବନ୍ଧୁ, ବିଶ୍ୱ କରଇ ନିବାହ ।
ଅନ୍ତର ନିଷ୍କଳପ୍ରେମେ ଭାଇ କଲୁ ମୋତେ,
ସାନ ଭଉଣୀ ଆଦର କରୁଥିବ ତୋତେ ।

ପ୍ରେମଟି ଆତ୍ମାର ଗୁଣ,    ସେ ତ ଧର୍ମବଳ,
ଅଗ୍ନିର ଉତ୍ତାପ ସମ    ଅଭିନ୍ନ କେବଳ ।
ସଂସାରର ବଦ୍ଧପ୍ରାଣେ    ପ୍ରେମ ପ୍ରବଞ୍ଚନା,
ଆତ୍ମାର ସ୍ୱରୂପ ଗୂଢ଼    ହୁଏ ବାଟବଣା ।
ପତ୍ନୀ ପୁତ୍ର ଧନମାନ    ନଶ୍ୱର ବିଭବେ,
ଭୁଲି ନର କରି ପ୍ରେମ,    ବିଡ଼ମ୍ବିତ ଭବେ ।
ନଶ୍ୱର ସଂସାର ସୁଖ    ବିଭବ ଅସାର,
ଧନ୍ଦୁ ଧନ୍ଦୁ ଖସିପଡ଼େ    କରେ ନାରଖାର ।
ହସାଇ ହାତକୁ ଆସେ,    ଯିବାକୁ କନ୍ଦାଇ,
ଆତ୍ମାକୁ ଗୁପତ କରେ,    କରେ ମତ୍ତ ବାଇ ।
ମୋର କୃପାବଳେ ଯେବେ    ଶୁଦ୍ଧ ହୁଏ ଚିତ୍ତ,
ଅନ୍ତରେ ବିଶୁଦ୍ଧ ପ୍ରେମ    ହୁଅଇ ଜାଗ୍ରତ ।
ଅନ୍ତରେ ଆତ୍ମାର ଦିଗେ    ତେବେ ଦୃଷ୍ଟି ଫେରେ,
ଆତ୍ମାରେଁ ସ୍ନେହ କରେ ପ୍ରେମ,    ଗତି ମୁକ୍ତି ଧରେ ।
ଆତ୍ମାରାମ ହୁଏ କ୍ରମେ,    ସାଧନାର ବଳେ,
ସକଳ ଆତ୍ମାର ଆତ୍ମା    ରୂପେ ମୋତେ ଖେଳେ ।
ଅନୁଭବେ ଗୁଣ, ସଉ-    ନ୍ଦର୍ଯ୍ୟ ହୁଏ ସୁଖୀ,
ଅନ୍ତରେ ବାହାରେ ସବୁ    ଭୂତେ ମୋତେ ଦେଖି ।
ଦିବ୍ୟ ମାଧୁର୍ଯ୍ୟରେ ବୁଡ଼ି    ହୁଏ ସେ ମଧୁର,
ବୁଝେ ରୂପଗୁଣ ଶକ୍ତି    ମୁଁ ଯେ ପରାତ୍ପର ।
ମୋ କୃପାରେ ବୁଝେ ନର,    ଭକ୍ତେ ମୋତେ ଧରେ,
ଏକଇ ପୁରୁଷୋତ୍ତମ    ଦିଶଇ ବିଶ୍ୱରେ ।
ଭଉଣୀ ! ତୁ ବୁଝିନାହୁଁ    ତତ୍ତ୍ୱରୂପେ ମୋତେ,
ସେ ତତ୍ତ୍ୱ ବା କେତେ ଜଣ    ଜାଣନ୍ତି ଜଗତେ ?

ପ୍ରେମମୟୀ ମୋ ପ୍ରକୃତି ପ୍ରେମେ ହୁଏ ଧରା,
ଶୁଦ୍ଧପ୍ରେମେ ବାନ୍ଧିଅଛୁ, ମୋତେ ଭାଇ କର ।
ନାହିଁ ତୋର ପିତାମାତା ଧନମାନ ସୁଖ,
ସ୍ୱର୍ଗର କାମନା ନାହିଁ, ନାହିଁ ବନ୍ଧ ମୋକ୍ଷ ।
ସକଳ ଭୁଲଣ ମୋତେ ଧନ୍ଯ ବଡ଼ କରି,
ଏ ଅପାର ଅନୁରାଗ ପାରେ କି ପଶୋରି ?
କି ବସ୍ତୁ ମୁଁ, ଭାଷା ନାହିଁ ଦେବାକୁ ବୁଝାଇ,
କି ଶବ୍ଦ ମୁଁ, ଶୁଣିବାକୁ କର୍ଣ୍ଣେ ଶକ୍ତି କାହିଁ ?
ଅରୂପ ମୁଁ, ଦେଖିବାକୁ ଚକ୍ଷୁ ପରାହତ
ଅଜ୍ଞେୟ ମୁଁ ରହେ ମହା ଜ୍ଞାନୀଙ୍କୁ ଗୁପତ ।
କିନ୍ତୁ ତୋ ଭଗିନୀ ! ଯେହୁ ଥରେ ଦେଖେ ମୋରେ,
ପିତା ଲାଗେ ସୃଷ୍ଟିସାରା, ପ୍ରେମେ ମୋତେ ଧରେ ।
ସକଳ ରସର ମଧ୍ୟେ ଶ୍ରେଷ୍ଠ ମୋରେ ମଣେ,
ଅନ୍ତରର ଭକ୍ତିପ୍ରୀତି ଢାଳେ ମୋ ଚରଣେ ।
ଭାଇ ଭାବେ ଧର ମୋରେ, ଯେ ପ୍ରେମ ମହାନ,
ଫୁଟେ ତୋ ଅନ୍ତରେ, କ୍ରମେ ଦେବ ଦିବ୍ୟଜ୍ଞାନ ।
ଜାଣିବୁ ସ୍ୱରୂପ ମୋର, କଳିବୁ ବିଭୂତି,
ସିଦ୍ଧ ହେବୁ, ମୋରେ ଲୀନ ହେବ ତୋର ମତି ।
ନିତ୍ୟ ସନାତନ ମୁହିଁ ପୂର୍ଣ୍ଣ ପରାତ୍ପର;
ଦୃଶ୍ୟ ବା ଅଦୃଶ୍ୟ ଯାହା ସବୁ ଇନ୍ଦ୍ରଜାଲ ।
ଏଇଅଛି, ଏଇନାହିଁ ଏ ସବୁ ତ ମାୟା,
ଛାୟାର ଭିତରେ ଖୋଜ ନ ମିଳେ ତ କାୟା ।
ବ୍ୟକ୍ତ ବିଶ୍ୱ, ଅନ୍ତରାଳେ ସତ୍ୟର ପ୍ରକାଶ,
ପରିବର୍ତ୍ତନ ଯେ ସବୁ ମୋ ଲୀଳା ବିଳାସ ।

ପ୍ରଳୟେ ଜଗତ ହୁଏ ମୋର ଦେହେ ଲୀନ,
ସୃଷ୍ଟିର ଆରମ୍ଭେ ମୋଠୁଁ ହୁଏ ଉତପନ୍ନ ।
ବ୍ରହ୍ମାଣ୍ଡ ମୁଁ, ପୁଣି ମୋଠି ସମସ୍ତ ବ୍ରହ୍ମାଣ୍ଡ,
ଅଣୁ ଅଣୁ ବ୍ୟାପି ମୁହିଁ ପରମ ଅଖଣ୍ଡ ।
ଯାହା ଅଛି ଯାହା ନାହିଁ ସବୁ ମୁହିଁ ଜାଣ,
ଅପ୍ରକଟ, ପୁଣି ମୁହିଁ ସଦା ବର୍ତ୍ତମାନ ।
ସ୍ରଷ୍ଟା, ମୁହିଁ କରେ ସୃଷ୍ଟି ହର ମୁଁ ସଂହାରେ,
ସୃଜନ ସଂହାର ହୁଏ ମୋର ମାୟା ବଳେ ।
ଏ ସବୁ ହେଲେ ବ, ତୁହି ମୋର ମୁହିଁ ତୋର,
ମୁଁ ତୋର ଗୋପାଳ ଭାଇ ତୁ ଭଗିନୀ ମୋର !
ଦେଖ ତୋର ପତି ମୋର ପୁରୁଣା ଭକତ,
ଅବନ୍ତୀ ପୁରରେ ପୂର୍ବ- ଜନ୍ମେ ହେଲା ଜାତ ।
ସେଠି ତୁ ବ୍ରାହ୍ମଣ ପତ୍ନୀ ମୋଠି କଲୁ ସ୍ନେହ,
ଅହେତୁକୀ ଭକ୍ତି ଧରି ଛାଡ଼ିଲୁ ତ ଦେହ ।
ଏବେ ତୁମେ ଦୁଇ ଧରି ବିମଳ ଭକତି,
ଲଭ ପରମ ଦୁର୍ଲ୍ଲଭ ବଇକୁଣ୍ଠ ଗତି ।
ଦୃଢ଼େ ବୁଝ ଭଉଣୀ ! ତୁ, ଥରେ ହେଲେ ମୋର,
ସେ ତ ହୁଏ ପ୍ରାଣବନ୍ଧୁ ନ ହୁଏ ଅନ୍ତର ।"
କଥା କହୁ କହୁ ପ୍ରଭୁ ଭଉଣୀର ଶିରେ,
ଥୋଇଲେ ଅଭୟ କର ଅତହିଁ ଆଦରେ ।
ବୁଢ଼ି ବଶ୍ୱାସିଲା, କଟି ଗଲା ମୋହ ପଟ,
ଭଗିନୀ ସମ୍ମୁଖେ ତତ୍ତ୍ୱ ସ୍ୱରୂପ ପ୍ରକଟ ।
ବୁଢ଼ି ନୟନେ ମଉଳିଲା ନ ପାରିଲା ସହି,
କି ସେ ଏକାତ୍ମତା ହେଲା କେ ପାରିବ କହି ?

ନିର୍ବିକଳ୍ପ ସମାଧିରେ ସରସ୍ୱତୀ ସ୍ଥିର,
ଜଡ଼ ପୁତ୍ତଳିକା, ନାହିଁ ଜୀବନ ସଞ୍ଚାର ।
କାହିଁଥିଲା କାହିଁ ଗଲା, କିବା ଅନୁଭବ,
କରୁଥିଲା ସେ ସ୍ଥିତିରେ ଅଜ୍ଞାତ ସରବ ।
ହସ୍ତ କାଢ଼ି ନେଲେ ପ୍ରଭୁ ସମାଧିସ୍ଥ ବାଳା,
ବହୁ କାଳ ପରେ ଆସ୍ତେ ଆସ୍ତେ ଚେତା ହେଲା ।
କି ଅପୂର୍ବ ମୁଖାକୃତି ଶାନ୍ତ ଜ୍ୟୋତିଭରା,
ଚକ୍ଷୁ ଦେଇ ଖେଳିଗଲା ସ୍ନିଗ୍ଧ ପ୍ରୀତିଧାରା ।
ବଦନର ଚତୁର୍ଦ୍ଦିଗେ ଜ୍ୟୋତିର ମଣ୍ଡଳ
ପ୍ରକାଶିଲା ପରା ଶାନ୍ତ ସନ୍ତୋଷ ବିମଳ ।
ସରସ୍ୱତୀ ମୁଖ ଦେଖି ହସିଲେ ଗୋପାଳ,
ଭଉଣୀର ମୁଖେ ହସ ନେତ୍ରେ ପ୍ରେମଜଳ ।
ଶ୍ରୀମୁଖରୁ ଉପଦେଶ, ପ୍ରତ୍ୟକ୍ଷ ଦର୍ଶନ,
ପାଇ ସରସ୍ୱତୀ କଲା ତା ଜୀବନ ଧନ୍ୟ ।
ଲଭି, ସୁଦର୍ଶନ ପ୍ରଭୁ ବିଚିତ୍ର ପ୍ରେରଣା,
ସବୁ ଛାଡ଼ି ସାର କଲା ବିଭୁ ଆରାଧନା ।
ପୂର୍ବଜନ୍ମ ସ୍ମୃତି ମନେ ହୋଇଲା ଜାଗ୍ରତ,
ଗୋପାଳ ସମ୍ମୁଖେ ତାର ହେଲେ ପ୍ରକଟିତ ।
ପତିପତ୍ନୀ ଦୁହିଁଙ୍କର ଏକ ପଥେ ଗତି,
ଏକଇ ସାଧନା ସାଧି, ଏକ ପରିଣତି ।
ଏକ ଭଗବାନେ ଦୁଇ ଦେଇ ପ୍ରାଣ ମନ,
ସକଳ କରମେ ହେଲା ବିଭୁ ଆରାଧନ ।
ନିଷ୍କାମ କରମେ କାଟି କରମ ବନ୍ଧନ,
ଶେଷେ ବଇକୁଣ୍ଠ ଧାମ କରିଲେ ମଗନ ।

× × × ×

ଜୟ ଜୟ ନନ୍ଦବାଳ ! ଜୟ ଭକ୍ତସଖା,
ଜୟ ଦରିଦ୍ରର ଧନ ! ଶୁଦ୍ଧ ପ୍ରେମଚଖା !
ଚଖାଅ ତୋ ପ୍ରେମ ବାରେ, ଉଠୁ ପ୍ରାଣ ମାତି,
ଶୁଦ୍ଧ କର, ପ୍ରୀତି ଢାଳି, କଳୁଷିତ ମତି ।



କଟକ ସତ୍ୟବାଦୀ ପ୍ରେସରେ ଶ୍ରୀ ଉଦୟନାଥ ଷଡ଼ଙ୍ଗୀଙ୍କ ଦ୍ୱାରା ମୁଦ୍ରିତ—୧୯୫[illegible]